# ଜ୍ଞାନାଞ୍ଜନ ଶଲାକା ।

ଜଗତ ଦୁଃଖର ମହୌଷଧ



ଶ୍ରୀଗୁରୁଙ୍କ କୃପାରୁ

ଶ୍ରୀ ବାଲକୃଷ୍ଣ ଦାସ ଜବସଜ ଦ୍ୱାରା

ପ୍ରଣୀତ

ଓ

ପ୍ରକାଶିତ



CUTTACK,
Printed by the Cuttack Printing Company Ld.
1904

ମୂଲ୍ୟ—ମନୋଯୋଗ ଦେବା ୫।୦ ୯ ଟଙ୍କା

# ଜ୍ଞାନାଞ୍ଜନ ଶଲାକା ।

—○)✻(○—

ପାଠକ ମହାଶୟ !

ଏହି କଟକ ନଗରରେ ଉତ୍କଳ ସମ୍ମିଳନୀର ଗତ ପ୍ରଥମ ଅଧି-ବେଶନ ସମୟରେ ଉତ୍କଳୀୟ ନେଲସନାଉମାନଙ୍କର "ପ୍ରାର୍ଥନା" ନାମରେ ଖଣ୍ଡିଏ କ୍ଷୁଦ୍ର ବେନାମୀ ପୁସ୍ତିକା ପୁରୀ ଜଗନ୍ନାଥ ପ୍ରେସ୍‌ରେ ମୁଦ୍ରିତ ହୋଇ ଚୁପ୍‌ଚାପ୍ ବିତରିତ ହୋଇଥିଲା ତାହା ବୋଧ ହୁଏ ଆପଣ ପାଠ କରିଥିବେ । ଗତ ଡିସେମ୍ବର ମାସ ତା ୧୬ ରିଖରେ ଇଣ୍ଡିଆ ଗେଜେଟରେ ଭାରତ ଗବର୍ଣ୍ଣମେଣ୍ଟ ଦେଶ ମିଶ୍ରଣ ବିଷୟକ ପ୍ରସ୍ତାବରେ ଗଞ୍ଜାମ, ସମ୍ବଲପୁର ଓ ଛୋଟନାଗପୁରର କିୟଦଂଶ ଓଡ଼ିଶା ସଙ୍ଗେ ମିଶାଇ ବଙ୍ଗଳାଦେଶ ମଧ୍ୟରେ ପୂର୍ବ ପ୍ରାୟ ରଖିବାର ମନ୍ତବ୍ୟ କରି ତତ୍ପକ୍ଷେ ସ୍ଥାନୀୟ ଗବର୍ଣ୍ଣମେଣ୍ଟଙ୍କର ଯେ ମତ ଚାହିଁଥିଲେ ତଦ୍‌ବିଷୟରେ ଯହିଁରେ ମିଶ୍ରିତ ଓଡ଼ିଶା ବଙ୍ଗଳା ହାତରୁ ଖାରିଜ ହୋଇ ମଧ୍ୟପ୍ରଦେଶ ସଙ୍ଗେ ମିଶି ପାରେ ତହିଁ ପକ୍ଷେ ଚେଷ୍ଟା କରିବା ପାଇଁ ଲୋକଙ୍କୁ ଫୁସୁଲାଇ ମତାଇବା ପୁସ୍ତିକାର ଉଦ୍ଦେଶ୍ୟ ଅଟେ । ଏଥିରୁ ପୁସ୍ତିକା ଖଣ୍ଡିକ ପାଠ କରି ଗୋଟିଏ ଗଳ୍ପ ମନେ ପଡ଼ିଲା, ତେଣୁ ଅଗ୍ରେ ସେ ଗଳ୍ପଟି କହି ପଛେ ପୁସ୍ତିକା ଲେଖକଙ୍କର ଯୁକ୍ତି ପକ୍ଷେ ମତାମତ ପ୍ରକାଶ କରାଯିବ ।

ଗଳ୍ପଟି ଏହି—ଏକସମୟରେ ଦିନେ ଶୀତକାଳରେ ଅତି ପ୍ରତ୍ୟୁଷରେ ହର ପାର୍ବତୀ ଆକାଶ ମାର୍ଗରେ ଭ୍ରମଣ କରୁଁ, ଦେଖିଲେ ଏକ ବୃକ୍ଷ ତଳେ ଜଣେ ବଡ଼ ଦରିଦ୍ର ଲୋକ ଶୀତରେ ଥର ଥର ହୋଇ "ଶିବ ଦୁର୍ଗା ଶିବଦୁର୍ଗା" ବୋଲି ଉଚ୍ଚୈଃସ୍ୱରେ ଡାକ ଛାଡ଼ୁ-ଅଛି । ତାହାର ଘୋଡ଼ିହେବାକୁ ବସ୍ତ୍ର ନାହିଁ, ଯେଉଁ କନା ଖଣ୍ଡିକ

ଯେଉଁଅଛି ତହିଁରେ ସହସ୍ର ଛିଦ୍ର, ତାହାର ଖେଙ୍କାଳିଆ ପେଟ ଓ କଙ୍କାଳମୟ ଶରୀରରୁ ଅନୁମାନ ହୁଏ ଦୁଇ ତିନି ଦିନରୁ କିଛି ଉଦରସ୍ଥ ହୋଇ ନାହିଁ, ଫଳତଃ ଲୋକଟି ଯେ ନିତାନ୍ତ ଗରିବ ଏଥିରେ ସନ୍ଦେହ ନାହିଁ । ଏହା ଦେଖି ପାର୍ବତୀଙ୍କର ମନରେ ବଡ଼ ଦୁଃଖ ଓ ଦୟା ହେଲା । ସେ ମହାଦେବଙ୍କୁ କହିଲେ 'ପ୍ରଭୋ ! ଲୋକେ ଆପଣଙ୍କୁ ଯେ "ଭୋଳାନାଥ" କହନ୍ତି ତାହା ଯଥାର୍ଥ, ଏ ଲୋକଟି ଏତେ କଷ୍ଟରେ ପୂଜା ଆପଣଙ୍କୁ ପାସୋରୁ ନାହିଁ ଅଥଚ ଆପଣ ଏ ଦୀନହୀନକୁ ପାସୋରି ପକାଇଅଛନ୍ତି, ଏ ବଡ଼ ଆଶ୍ଚର୍ଯ୍ୟ ! ଏହାର ଦୁରବସ୍ଥା ପ୍ରତି ଆପଣଙ୍କର ଟିକିଏ ଅନୁଗ୍ରହ ହେଉ ନାହିଁ ?' ମହାଦେବ କହିଲେ "ପ୍ରିୟେ ! ମୁଁ କି କରିବ ଏହାର କପାଳରେତ ଧନ ଭୋଗ କରିବାର ଲେଖା ନାହିଁ ମୁଁ ଧନ ଦେଲେ ସେ କାହୁଁ ଭୋଗ କରି ପାରିବ ?" ଏହା ଶୁଣି ପାର୍ବତୀ କହିଲେ "ନାଥ ! ମୁଁ ଆପଣଙ୍କର ଚରଣ ଧରି ପ୍ରାର୍ଥନା କରୁଅଛି ଆପଣ ଅନୁଗ୍ରହପୂର୍ବକ ତାକୁ କିଛି ଧନ ଦେଉନ୍ତୁ ଦେଖାଯାଉ ସେ ତାହା ଭୋଗ କରି ପାରୁଛି କି ନା" । ତହୁଁ ମହାଦେବଙ୍କର ଆଦେଶମତେ ନନ୍ଦୀ ଭକ୍ତ ଦରିଦ୍ରର ନିକଟସ୍ଥ ପଥ ଉପରେ ତୋଡ଼ାଏ ମୋହର ଥୋଇ ଦେଇ ଆସିଲେ, ହରପାର୍ବତୀ ଅଲକ୍ଷିତରେ ଆକାଶରେ ଥାଇ କୌତୁକ ଦେଖିବାକୁ ଲାଗିଲେ ; ଖଣ୍ଡ ପତ୍ର ଗଣ୍ଡାରୁ ଦରିଦ୍ର ବୃକ୍ଷ ମୂଳରୁ ଉଠି ଗ୍ରାମ ଆଡକୁ ଭିକ୍ଷା କରିବାକୁ ବାହାରିଲା । ଯାଉଁ୨ ମନେ୨ ବିଚାରି କଲା "ପ୍ରତିଦିନ ଭିକ ମାଗି ଯାଏଁ କେବେ କିଛି ମିଳେ କେବେ ନାହିଁ, ଆଜି ଅନ୍ଧପରି ଆଖି ବୁଜି ଭିକମାଗି ବୁଲିବି ତାହାହେଲେ ଲୋକେ ଦୟା କରି ଅଧିକ ଭିକ୍ଷା ଦେବେ" । ଏହିପରି ମନେ କରି ଦୁଇ ଚକ୍ଷୁ ବୁଜି ଅନ୍ଧପରି ଚାଲିବାକୁ ଲାଗିଲା, ଯାଉଁ୨ ପଥରେ ସୁବର୍ଣ୍ଣ-ମୁଦ୍ରା ପୂର୍ଣ୍ଣ ଥଳିକୁ ଡେଇଁ ଚାଲିଗଲା ।

ପୁସ୍ତିକା ପଢ଼ି ମନରେ ଉଦୟ ହେଉଅଛି ଆମ୍ଭମାନଙ୍କର କପାଳରେ କର୍ମ ନ ଥିଲେ ଦରିଦ୍ର ବ୍ୟକ୍ତିର ଦଶା ନ ଘଟେ । ତେଣେ ତାହା

ପ୍ରଭୃତି ବଙ୍ଗଳାହାତରୁ ବାହାରଯିବା ବିରୁଦ୍ଧରେ ଭୁମୂଳ ଆନ୍ଦୋଳନ ଲାଗିଅଛି, ଏ ସମୟରେ ଏଣୁ ଉଖୁଣ୍ଡ ଉଖୁର ହେଲେ ଯେବେ ଗବର୍ଣ୍ଣମେଣ୍ଟ ହତାଶ୍ଳ ନ "ନୂତନ ପ୍ରସ୍ତାବରେ ଯେବେ ସମସ୍ତଙ୍କର ଆପତ୍ତି ତେବେ ପୂର୍ବେ ଯେପରି ଥିଲା ସେହିପରି ଥାଉ"। ତାହା ହେଲେ ବସ୍। ଆମ୍ଭମାନଙ୍କର ବହୁକାଙ୍କ୍ଷିତ ଉତ୍କଳଦେଶ ଏକତ୍ର ହେବାର ଚିରପୋଷିତ ଆଶା ଯାହା ଏତେ କାଳେ ଫଳବତୀ ହେବାକୁ ବସିଅଛି ତାକୁ ଚିରକାଳପାଇଁ ଜଳାଞ୍ଜଳି ଦେବାକୁ ହେବ। ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ଲେଖକ ଯେବେ ନନ୍ଦନ କାନନର ସୁଖ ଭୋଗ କରିବାର ଆଶା ମଣିଚଢ଼ା ଦେଖିଥାନ୍ତି ତେବେ ତାଙ୍କୁ ସବିନୟ ପ୍ରାର୍ଥନା ଯେ ଦୈବ ସମ୍ଭାଳଂସ୍ୟାଉନ୍ତୁ, ଅନେକ କ୍ଷୁଦ୍ରାଏ ସୁଖ ଏକାବେଳକେ ଗିଳି ପକାଇଲେ ଅଜୀର୍ଣ୍ଣ ହୋଇ ପ୍ରାଣ ସଂଶୟ ହେବ। ଶାସ୍ତ୍ରରେ ଅଛି "ଅତିଭୋଜନଂ ରୋଗମୂଳଂ ଆୟୁଃକ୍ଷୟକରଂ, ତସ୍ମାତ୍ ଅତି ଭୋଜନଂ ପରିହରେତ୍"।

ଲେଖକଙ୍କର ପ୍ରାର୍ଥନାର ଯୌକ୍ତିକତା ଆଲୋଚନା କରିବା ପୂର୍ବରୁ ଦେଖାଯାଉ ବଙ୍ଗଳାକୁ ଛାଡି ମଧ୍ୟପ୍ରଦେଶରେ ଗୁଞ୍ଜି ହେବାରେ ତାଙ୍କର ଉଦ୍ଦେଶ୍ୟ କଅଣ। ପୁସ୍ତିକାରେ ପ୍ରକାଶ ଭାବରେ ଲେଖା ନ ଥିଲେ ସୁଦ୍ଧା ଲେଖାର ଭଙ୍ଗୀରୁ ସ୍ପଷ୍ଟ ଜଣା ପଡୁଅଛି ଯେ ବଙ୍ଗଳାରେ ଜ୍ଞାନୀ, ଧନୀ ଓ କାର୍ଯ୍ୟଦକ୍ଷ ପ୍ରଭୃତି ଲୋକଙ୍କ ସଂଖ୍ୟା ଅନେକ ସୁତରାଂ ସେମାନଙ୍କ ସଙ୍ଗେ ପ୍ରତିଯୋଗିତାରେ ଦରିଦ୍ର-ଅଜ୍ଞ ଓ ଅକର୍ମା ଓଡ଼ିଆ ପୁଏ ପାର ହୁଅନ୍ତି ନାହାନ୍ତି, ତେଣୁ ମଧ୍ୟ-ପ୍ରଦେଶବାସୀ, ଯେଉଁମାନେ କି ଲେଖକଙ୍କ ବର୍ଣ୍ଣନାରେ, ଛିଣ୍ଡା ଅର୍ଦ୍ଧିଚ, ଗଜମୂର୍ଖ ଓ କୋଢ଼ିଆ ଅଟନ୍ତି, ତାଙ୍କ ସଙ୍ଗେ ମିଶିଲେ ଉତ୍କଳୀୟମାନେ ଅତିରେ ତାଙ୍କ ମୁଣ୍ଡରେ ଚଢ଼ିବେ। ଛି। ଛି। ଏପରି ବାଞ୍ଛା ବଡ଼ ଅସାଧୁ ବାଞ୍ଛା ସୁତରାଂ ଜଗଦୀଶ୍ୱରଙ୍କର ନ୍ୟାୟ ରାଜ୍ୟରେ କଦାପି ସଫଳ ହେବାର ସମ୍ଭାବନା ନାହିଁ। ସେବକ ସମ୍ପ-

ଲଗରେ ପାଦ୍ରି ସ୍ମିଗସାହେବ ଯେ କହିଥିଲେ ତୁମ୍ଭେମାନେ "honest rivalry,, (ସତ୍ ପ୍ରତିଯୋଗିତା) କର" ତାହାର ଫଳ କି ଏହି ? ପାଞ୍ଚଫୁଟ ଛଅଇଞ୍ଚ ଲେଖାଏଁ ଉଚ୍ଚ ଦଶଜଣଙ୍କ ମଧ୍ୟରେ ଥାଇଁ ଆପଣାର ଟେକ ରଖିବା ମାନସରେ ଯେବେ ତୁମ୍ଭେ ସଙ୍ଗୀ ନଅଜଣଙ୍କର ମୁଣ୍ଡ କାଟି ପକାଅ ତେବେ ତାକୁ "ସତ୍ ପ୍ରତିଯୋଗିତା" ବୋଲାଯିବ କି ? ତୁମ୍ଭେ ଯେବେ ପାଞ୍ଚଫୁଟ ଦଶଇଞ୍ଚ ହୋଇ ପାର ତାହାହେଲେ ତୁମ୍ଭର ସଙ୍ଗୀ-ମାନଙ୍କ ଉପରେ ତୁମ୍ଭର ଟେକ ରହିବ, ମଧ୍ୟ ସେପରି ଉନ୍ନତ ହେବାକୁ ଇଚ୍ଛା କରିବାରେ ତୁମ୍ଭର ପ୍ରଶଂସା ଭିନ୍ନ ନିନ୍ଦା ହେବ ନାହିଁ । ଅହୁର ମନୋହର ଏକପାଖରେ ଶ୍ରୀକୃଷ୍ଣ ଓ ଅନ୍ୟ ପାଖରେ ଉତ୍କୃଷ୍ଟ ଲୋକ ତୁମ୍ଭ ମଧ୍ୟରେ ବର୍ତ୍ତମାନ, ତୁମ୍ଭେ କାହାକୁ ଆଦର୍ଶ କରି ଅନୁ-କରଣ କରିବ ? ଯେ ତୁମ୍ଭର ଆଦର୍ଶ ତାହା ନିକଟରୁ ଅନ୍ତର ହେବା ଉଚିତ କି ? ଅହୁର ଗୋଟିଏ କଥା ମାନିଲୁଁ ତୁମ୍ଭେ ମଧ୍ୟପ୍ରଦେଶ ବାସିଙ୍କର ମସ୍ତକ ମଣି ହୋଇ ସମସ୍ତ ସରକାରୀ,ବେସରକାରୀ କାର୍ଯ୍ୟ, ଓକାଲତି ( ଅଉ ତୁମ୍ଭେ କାହିଁକି ଯୋଗ୍ୟ ଦେଖା ଯାଉ ନାହିଁ ) ପ୍ରଭୃତି ତାଙ୍କଠାରୁ ଛଡ଼ାଇ ନେଇ ତାଙ୍କ ଅଙ୍ଗରେ ଧୂଳି ପକାଇଲ, ତମ ଗଞ୍ଜାମର ଓଡ଼ିଆ ଭାଇମାନେ ଯେ ତୁମ୍ଭ ସଙ୍ଗେ ମିଶିବେଂ ସେମାନେ କଅଣ କରିବେ ? ସେମାନେ ତୁମ୍ଭର ଗୋଡ଼ ଚାଟିବେ କି ? ଅଉ ସମ୍ବଲପୁର ବାସୀ ? "ତୁମ୍ଭି ଯେ ଢଙ୍ଗରେ ତୁମ୍ଭି ସେ ଢଙ୍ଗରେ" ହେବେ ନା ? ଭାଇ ପ୍ରାର୍ଥନାକାରୀ ! ତୁମ୍ଭେ ମଧ୍ୟପ୍ରଦେଶବାସିଙ୍କୁ ଯେପରି ବନ୍ୟପଶୁ ପ୍ରାୟ ମନେ କରୁଅଛ ସେମାନେ ପ୍ରକୃତରେ ସେପରି ଅକର୍ମଣ୍ୟ ନୁହନ୍ତି, ସେମାନେ ଅଧିକାଂଶ ମଦ୍ୟବସ୍ତ୍ର-ବିଶୋଭିତ କର୍ମବୀର, ତାଙ୍କ ନିକଟରେ ଧପାଧପି ଚଳିବ ନାହିଁ, ପୁଣି ଅମ୍ଭେମାନେ ଏପରି ଅସାଧୁ ସ୍ୱାର୍ଥପର ବାଞ୍ଛା ମନରେ ରଖି ସେମାନଙ୍କ ନିକଟରେ ଉପସ୍ଥିତ ହେଲେ ନିଶ୍ଚୟ ଗୁପୁଡ଼ା ଖାଇ ଆସିବା । ପରନ୍ତୁ ଶତାଧିକ

ବର୍ଷ ବଙ୍ଗଳା ସଙ୍ଗେ ରହି ଆମ୍ଭମାନଙ୍କର ଯେ ଅନେକ ଉନ୍ନତି ହୋଇଅଛି ଓ ମଧ୍ୟ ଭବିଷ୍ୟତରେ (ଅବଶ୍ୟ କ୍ରମେ) ହେବ ଏଥିରେ ଦ୍ୱିରୁକ୍ତି ନାହିଁ; ଏପରି ସ୍ଥଳେ ନଷ୍ଟିତ ବଂଶଯୁକ୍ତ ଶ୍ରୁତ ଅନୁଚଣ୍ଡ ହୋଇ ଅନାସ୍ଥିତ ଅଂଶାମଖାତକା ପଛରେ ଗୋଡ଼ାଇବା ବାତୁଳତା ଭିନ୍ନ କି ବୋଲାଯାଇ ପାରେ ? ଲେଖକ ! ଏବେବେଳେ ବଡ଼ଲାଟଙ୍କ ନାହାନ୍ତି ହୋଇଥିଲେ ତୁମ୍ଭପାଇଁ ମଧ୍ୟମନାରାୟଣ ତୈଳର ବ୍ୟବସ୍ଥା ହୋଇଥାନ୍ତା !

ଲେଖକ ପୁସ୍ତିକାର ୩୬ ପୃଷ୍ଠାରେ ଲେଖିଅଛନ୍ତି " ପଶ୍ଚାନ୍ତରେ ସ୍ଥିର ଧୀର୍ ଚିତ୍ତରେ ବିବେଚନା ନ କରି ସ୍ୱାର୍ଥର ବଶବର୍ତ୍ତୀ ହୋଇ କିମ୍ବା ଆତ୍ମପ୍ରତିଷ୍ଠା ଲାଳାୟିତ ହୋଇ ଅଥବା ବ୍ୟକ୍ତି ବିଶେଷର ଅନୁରୋଧ ଉପରୋଧ ପଡ଼ି ହୋଇ ଯେଉଁମାନେ ଏ ଘଟଣାରେ କୌଣସି ଏକମତ ସମର୍ଥନ କରିବେ ସେମାନେ କେବଳ ଆତ୍ମଘାତୀ ନୁହନ୍ତି ଅପିତ ଦେଶଦ୍ରୋହୀ ସମାଜଦ୍ରୋହୀ ଏବଂ ଭାବି ବଂଶଧରମାନଙ୍କର ସକଳ ଅମଙ୍ଗଳର ନିଦାନ ଅଟନ୍ତି ।" କଥାରେ କହନ୍ତି "ଗୋଦଣ୍ଡ ଲୋ ! ଗୋଡ଼ ତଳକୁ ଅନା" "Physician cure thyself" ଲେଖକ ମହୋଦୟ ! ଟିକିଏ କ୍ଷୀଣାଲୋକଶଲାକାଦ୍ୱାରା ଚକ୍ଷୁ ଉନ୍ମିଳନ କରି ଥରେ ଉପରକୁ ଚାହିଁ ଅପଣା ହୃଦୟ ଭିତରେ ଅନ୍ତର୍ଦୃଷ୍ଟି କରନ୍ତୁ ତ ? କେଉଁ ସ୍ପୃହେଷୀ, ଓକାଲତୀ ପ୍ରଭୃତି ପରିର ଅନ୍ତରେ ଧୂଳି ଦେବା ଓ ଆକାଶକୁସୁମ ବହୁ ବଡ଼ ଖେତାବ ଅଭିଲାଷ ତହିଁରେ ବଳବାନ୍ ହୋଇ ରକ୍ତକୁ ଅପଣଙ୍କର ମସ୍ତକକୁ ପ୍ରେରଣ କରିଅଛି ? ଏ ଜାଡ଼ଦିନରେ ଏଠାରେ ବରଫର ଅଭାବ ସୁତରାଂ ପଟଳ ପୋଖରୀରୁ ହାଣ୍ଡିଏ ପଙ୍କ ଆଣି ଶୀଘ୍ର ଅପଣଙ୍କ ମୁଣ୍ଡରେ ନ ଥୋଇଲେ ରକ୍ତାଧିକ୍ୟ ଯୋଗୁଁ ଅପଣଙ୍କର ମସ୍ତକର ଧମନୀ ବିଦୀର୍ଣ୍ଣ ହେବାର ସମ୍ଭାବନା ! ଅଣ୍ଡା କନ୍ଦର କେଉଁ ସାଧୁମାନଙ୍କରେ ତୁମ୍ଭେ ବଙ୍ଗଳାର ସୁଶାସନ ଛାଡ଼ି ବେଆଇନୀ (non-regulation) ମଧ୍ୟପ୍ରଦେଶରେ ଲୁଣ୍ଠି ହେବାକୁ ଲୋକଙ୍କୁ ପରାମର୍ଶ ଦେଉଅଛ ? ତୁମ୍ଭର ସଂଖ୍ୟା କେତେ ?

ରମାଭାଇ, ମଦନାଭାଇ, ଅଛ ମୁଁ ଏହି ନା ? ଗଞ୍ଜାମୀ ଭାଇ ! ସମ୍ବଲପୁରଅ ଭାଇମାନେ ! ସାବଧାନ ! ମନ୍ଦିରଗରୁ ଯାଇଁ କାନ୍ଦାରରେ ନ ପଡ଼ ! ! ! ଗତ ସମ୍ମିଳନୀ ସମୟରେ କଟକକୁ ଆସି କଣ୍ଟୁ ମାନଙ୍କର ଅବସ୍ଥା ତୁମ୍ଭମାନଙ୍କ ଅପେକ୍ଷା ଭଲ ବୋଲି ଯେବେ ମନେ କରିଥାଅ ତେବେ ଏ ଫୁସୁଲାଫୁସୁଲିରେ ଭୁଲିବ ନାହିଁଟି !

ଏବେ ଲେଖକଙ୍କର ଯୁକ୍ତିଗୁଡ଼ିକର କିଞ୍ଚିତ୍ ସମାଲୋଚନା କରାଯାଉ ।

ସମସ୍ତ ଓଡ଼ିଆଭାଷୀଙ୍କୁ ଏକ ଶାସନାଧୀନରେ ରଖିବାପାଇଁ ଗଭର୍ଣ୍ଣମେଣ୍ଟଙ୍କୁ ଯେ ଆବେଦନପତ୍ରମାନ ପଠାଯାଇଥିଲା ସେମାନଙ୍କ ମଧ୍ୟରେ କୌଣସି ଆବେଦନପତ୍ରରେ ମିଶ୍ରିତ ଓଡ଼ିଶାକୁ ବଙ୍ଗଳା ଶାସନାଧୀନରେ ରଖାଯିବା ନାହିଁରେ ବଙ୍ଗଳା କିମ୍ବା ଅନ୍ୟ ପ୍ରଦେଶର ଶାସନାଧୀନ କରାଯିବାର ଯେ ଉଲ୍ଲେଖ ହୋଇଥିଲା ତାହାର କାରଣ ଲେଖକ କହନ୍ତି କି "ସେତେବେଳେ କୌଣସି ମତେ ଏକତ୍ରିତ ହେବା ସେମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସେମାନେ ଏକଜାତି ଏବଂ ଏକଭାଷୀ, ଛିନ୍ନ ବିଚ୍ଛିନ୍ନ ହୋଇ ବହିପ୍ରଭାବରେ ଏଣେ ତେଣେ ପଡ଼ିଥିବାରୁ ବ୍ୟାକୁଳ ଚିତ୍ତରେ ଅନ୍ୟ କୌଣସି ପ୍ରକାର ବିଚାର ନ କରି ଏକତ୍ର ମିଳିତ ହେବା ସକାଶେ ବଡ଼ଲାଟଙ୍କ ଶ୍ରୀଚରଣରେ ଗୁହାରି କରିଥିଲେ ।" ଏ ଯୁକ୍ତି ବଡ଼ ବିଚିତ୍ର ସନ୍ଦେହ ନାହିଁ । ଆବେଦନକାରୀମାନେ ଏତେ ବ୍ୟାକୁଳଚିତ୍ତ ହୋଇପଡ଼ିଥିଲେ ଯେ ସେମାନଙ୍କର ଆବେଦନପତ୍ରରେ "କେଉଁ ଶାସନାଧୀନରେ ରହିବେ" ଏତେ ବଡ଼ ପ୍ରୟୋଜନୀୟ କଥାଟାର ସ୍ପଷ୍ଟ ଉଲ୍ଲେଖ କରିବାକୁ ସୁଦ୍ଧା ଭୁଲି ଗଲେ । ଏ କଥା ଯେବେ ଠିକ ହୁଏ ତେବେ ଏଥିରୁ ସିଦ୍ଧାନ୍ତ ହେଉଅଛି ଯେ ଉକ୍ତ ଆବେଦନପତ୍ର ମାନ ସୁବିଚାର ପୂର୍ବକ ଲେଖାଯାଇ ନ ଥିଲା, ଜଣକେତେ ଅପରିଣାମଦର୍ଶୀ ନିତାନ୍ତ ତରତରିଆ ଭାବରେ ଯେନ ତେନ ପ୍ରକାରେଣ କର ଖସ୍ତ୍ରେ ଦରଖାସ୍ତ ଲେଖି ଗୁଞ୍ଜି ଦେଇଥିଲେ । ଯେବେ

ଏପରି ହୋଇ ଥାଏ ତେବେ ସେ ଆବେଦନପତ୍ର ମାନଙ୍କର ମୂଲ୍ୟ କେ-ତେ ? ଏ ତ ପିଲା ଖେଳ ? ଫଳତଃ ଆବେଦନକାରୀମାନେ କେବଳ ଦେଶ ମିଶ୍ରଣର ଅତ୍ୟନ୍ତ ଆବଶ୍ୟକତା ଉପଲବ୍ଧି କରି ତାହା ସେମା-ନଙ୍କର ଆବେଦନପତ୍ରମାନଙ୍କରେ ପ୍ରାର୍ଥନା କରଥିଲେ, ଶାସନ ପରିବ-ର୍ତ୍ତନର କୌଣସି ପ୍ରୟୋଜନ ଦେଖି ନାହାନ୍ତି । ପ୍ରକୃତରେ ମଧ୍ୟପ୍ରଦେଶ ଅପେକ୍ଷା ବଙ୍ଗଳାର ଶାସନ ପ୍ରଣାଳୀ ଯେ ଉତ୍କୃଷ୍ଟ ଓ ସୁବିଧାଜନକ ତାହା ସମସ୍ତେ ଜାଣନ୍ତି, ଭାଗ୍ୟକୁ ଏହା ମିଳେ, ବୋଧ କରୁଁ ସ୍ୱୟଂ ଲେଖକଂ ମଧ୍ୟ ଏ ପ୍ରଣାଳୀର ଦୋଷ ଦେଖାଇ ଦେଇ ପାରିବେ ନାହିଁ ଓ ତାଙ୍କର ଲେଖାରେ ମଧ୍ୟ ଏମନ୍ତ କରିବାକୁ ସେ ସାହସୀ ହୋଇପାରି ନାହାନ୍ତି । ଅର୍ଥାତ୍ "ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ଆମ୍ଭେମାନେ ସ୍ୱର୍ଗଲାଭ କରିବୁଁ" କେବଳ ଏହି କଥା କହି ସେ ସମସ୍ତଙ୍କୁ ଫୁସୁଲାଇବାର ଚେଷ୍ଟା କରୁଅଛନ୍ତି, କିନ୍ତୁ "ବଙ୍ଗଳା ନରକ ଅତଏବ ପରିତ୍ୟାଜ୍ୟ" ଏପରି କହିବାକୁ ତାଙ୍କର ସାହସ ହୋଇ ନାହିଁ । ବଙ୍ଗଳା ଯେବେ ମନ୍ଦ ନୁହେ ତେବେ ତାଙ୍କୁ ଖଣ୍ଡ ଭବିଷ୍ୟତ୍ ଅନିଶ୍ଚିତ ସୁଖର ଆଶାମରୀଚିକାର ବଶବର୍ତ୍ତୀ ହୋଇ ମଧ୍ୟ-ପ୍ରଦେଶ ସଙ୍ଗେ ମିଶିବାକୁ ଇଚ୍ଛା କରିବା ଉଚିତ କି ନା ତାହା ପାଠକ ଭାଳ ଦେଖିବେ । ଆଉ ଯେ ଅସନ୍ତୁଷ୍ଟ ତାହାର ସୁଖ କୌଣସିଠାରେ ନାହିଁ ଏହା ନିଶ୍ଚୟ ।

ଏଥି ଉତ୍ତାରୁ ଲେଖକ କହନ୍ତି କି "ଶାସନ ସମ୍ବନ୍ଧେ ଓଡ଼ିଆଙ୍କର ଭାଗ୍ୟ ଚତୁର୍ବିଧ । ପ୍ରଥମ ଚିଫ କମିଶନର ଲାଭ କରି ସ୍ୱତନ୍ତ୍ର ଶାସନା-ଧୀନରେ ରହିବା; ଅବଶିଷ୍ଟ ତିନପ୍ରକାର ମାନ୍ଦ୍ରାଜ, ମଧ୍ୟପ୍ରଦେଶ କିମ୍ବା ବଙ୍ଗଳା ସଙ୍ଗେ ମିଶିବା । ଚିଫ୍ କମିଶନର ଲାଭ କରି ସ୍ୱତନ୍ତ୍ର ଶାସ-ନାଧୀନରେ ରହିବା ସ୍ୱର୍ଗଲାଭ । ସ୍ୱତନ୍ତ୍ର ଶାସନଲାଭ କଲେ ଅବଶ୍ୟ କଲିକତା ହାଇକୋର୍ଟ ଏବଂ କଲିକତା ବିଶ୍ୱବିଦ୍ୟାଳୟରୁ ବଞ୍ଚିତ ହେବାକୁ ନ ପଡ଼ୁ । ବର୍ତ୍ତମାନ ଏପରି ଦୃଢ଼ଭାବେ ପ୍ରାର୍ଥନା କରିବା

ଅଟେଁ ଅସଙ୍ଗତ ନୁହେ ।" ଏହା କହି ଲେଖକ ଦେଖାଇଅଛନ୍ତି ଯେ ଯେବେ ବେଗର ଓଡ଼ିଶା ସଙ୍ଗେ ମିଶିଯାଏ ତେବେ ତହିଁର କ୍ଷେତ୍ରଫଳ ଓ ଲୋକ ସଙ୍ଖ୍ୟା ଗୋଟିଏ ସ୍ୱତନ୍ତ୍ର ଚିଫ୍ କମିଶନର ପାଇଁ ପ୍ରଚୁର ହେବ ଓ ରାଜସ୍ୱ ଅଧିକ ହେବାରୁ ବ୍ୟୟକୁ ମଧ୍ୟ ନିଅଣ୍ଟ ହେବ ନାହିଁ । ସ୍ୱତନ୍ତ୍ର ଚିଫ୍‌କମିଶନର ଲାଭ କରିବା ସୁଖର ବିଷୟ ସନ୍ଦେହ ନାହିଁ, ମାତ୍ର ତାହା ଯେବେ ସର୍ବାଙ୍ଗ ସୌଷ୍ଠବ ହୁଏ ତେବେ ବାଞ୍ଛନୀୟ । ଏପରି ଗୋଟିଏ ପୂର୍ଣ୍ଣ ଚିଫକମିଶନର ବନ୍ଧୁ ବ୍ୟୟସାଧ୍ୟ ସୁତରାଂ ତନ୍ନିମିତ୍ତ ପ୍ରାର୍ଥନା କରିବା ଅରଣ୍ୟରେ ରୋଦନ ମାତ୍ର । ଅସ୍ମମାନଙ୍କ ଅପେକ୍ଷା ଗବର୍ଣ୍ଣମେଣ୍ଟ ଆପଣାର ଆୟ ବ୍ୟୟ କଥା ଭଲ ବୁଝନ୍ତି; ସେ ପକ୍ଷେ ଗବର୍ଣ୍ଣମେଣ୍ଟଙ୍କୁ ଉପଦେଶ ଦେବାକୁ ଅମ୍ଭେମାନେ ଯୋଗ୍ୟ ନୋହୁଁ । ପୁଣି ଯେଉଁଠାରେ ବନ୍ଧୁ ବ୍ୟୟର କଥା ସେ ସ୍ଥଳେ ଅମ୍ଭେମାନେ କନାକଟା କରି ଭିକ୍ଷାର ଝୋଲି ମେଲାଇ ବସିଲେ କିଏ ଦୟା କରିବ ? ବିଶେଷତଃ ଗବର୍ଣ୍ଣମେଣ୍ଟ ଅସ୍ମମାନଙ୍କୁ ଯେଉଁ ଶାସନାଧୀନରେ ରଖିଅଛନ୍ତି ତହିଁରେ ଯେ ସ୍ଥଳେ ଅସ୍ମମାନଙ୍କର କୌଣସି ଅସୁବିଧା ବା ଅସନ୍ତୁଷ୍ଟିର କାରଣ ନାହିଁ ସେ ସ୍ଥଳେ ଅମ୍ଭେ-ମାନେ ଯେବେ ଅଧିକ ସୁଖଲାଭ ଆଶାରେ ତାଙ୍କୁ ଅଧିକତ୍ୱର ବ୍ୟୟ ଭାର ବହନ କରିବାକୁ ଅନୁରୋଧ କରୁଁ ତେବେ ସେ ଅସ୍ମମାନଙ୍କର ଏପରି ଅନ୍ୟାଯ୍ୟ ପ୍ରାର୍ଥନାରେ କର୍ଣ୍ଣପାତ କରିବେ କାହିଁକି ? ତେବେ ଅମ୍ଭେ ଓଡ଼ିଆମାନେ ଏକ ଠୁଲ ହୋଇ ଅନେକଦିନ ଏକତ୍ରରେ ରହିଲା ଉତ୍ତାରୁ ଯେବେ କୌଣସି ସମୟରେ ସ୍ୱତନ୍ତ୍ର ଶାସନର ଫଳ ଭୋଗ କରିବାକୁ ଯୋଗ୍ୟ ହେଉଁ ତେବେ ଗବର୍ଣ୍ଣମେଣ୍ଟ ସ୍ୱୟଂ ତାହା ଅସ୍ମମାନଙ୍କୁ ପ୍ରଦାନ କରିବାକୁ କୁଣ୍ଠିତ ହେବେ ନାହିଁ । ତାହା ସମୟ ସାପେକ୍ଷ, ସେ ସମୟ ଏ ପର୍ଯ୍ୟନ୍ତ ଉପସ୍ଥିତ ହୋଇ ନାହିଁ । ବର୍ତ୍ତମାନ ଯାହା ମିଳୁଅଛି ତାହା ମିଳୁ ଅଧିକ ଗୁଡ଼ାଏ ଲୋଡିବାର ଭଲ ନୁହେ । ଭଦ୍ରକ ହାତ, ଘୋଡ଼ା, ଧନ, ଦୌଲତ ଯାହା ମାଗି

ତାହା ତାଲୁ କେହ ଦବ ନାହିଁ, ଦାତାଙ୍କର ଇଚ୍ଛାନୁସାରେ ସେ ଦାଅନ୍ତ । ସୁତରାଂ ଏତେବେଳେ ତପଳମିଶନର ପ୍ରାର୍ଥନା କରି ଗବର୍ଣ୍ଣମେଣ୍ଟଙ୍କୁ ବିରକ୍ତ କରିବା ଉଚିତ ନୁହେ । ତଦ୍‌ବାଦ ମିଶ୍ରିତ ଓଡିଶାକୁ ମାନ୍ଦ୍ରାଜ ସଙ୍ଗେ ମିଶାଇବା ବିରୁଦ୍ଧରେ ଲେଖକ ଯେ ଯୁକ୍ତି ଦେଖାଇଅଛନ୍ତି ସେ ଯୁକ୍ତି ଯଥାର୍ଥ ଅଟେ, ଗବର୍ଣ୍ଣମେଣ୍ଟଙ୍କର ମଧ୍ୟ ସେହିପରି ଇଚ୍ଛା ।

ଏଥି ଉତ୍ତାରୁ ପ୍ରଧାନ କଥା ଅର୍ଥାତ୍ ମିଶ୍ରିତ ଓଡିଶା ବଙ୍ଗଳାସଙ୍ଗେ ରହିବ କି ମଧ୍ୟପ୍ରଦେଶ ସଙ୍ଗେ ମିଶିବ ? ଏ ସମ୍ବନ୍ଧରେ ଲେଖକ ଯେ ଯୁକ୍ତିମାନ ଦେଖାଇଅଛନ୍ତି ତହିଁର ସମାଲୋଚନା କରି ଯାଉଅଛୁ ତହିଁରୁ ପାଠକମାନେ ଦେଖିବେ ଲେଖକଙ୍କର ଯୁକ୍ତି କେତେଦୂର ସମୀଚୀନ । ଲେଖକ କହନ୍ତି " ଆମ୍ଭେମାନେ କୌଣସି ଏକପକ୍ଷର ପୋଷଣ ନ କରି ସାଧାରଣଙ୍କ ବିଚାରାର୍ଥେ ନିମ୍ନରେ କେତେକ ବିଷୟ ଲେଖୁଅଛୁଁ ※※※ " କିନ୍ତୁ ପୁସ୍ତିକା ଖଣ୍ଡିକ ଆଦ୍ୟୋପାନ୍ତ ପାଠ କଲେ ସହଜରେ ଜଣାଯିବ ଯେ ମିଶ୍ରିତ ଉତ୍କଳପ୍ରଦେଶକୁ ମଧ୍ୟପ୍ରଦେଶର ଶାସନାଧୀନରେ ରଖାଯିବାପାଇଁ ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ କରିବା ନିମିତ୍ତ ଲୋକଙ୍କୁ ଫୁସୁଲାଇ ମତାଇବା ଭିନ୍ନ ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ । ତାଙ୍କର ଯୁକ୍ତିମାନଙ୍କର ସମାଲୋଚନା ନିମ୍ନେ ପୃଥକ ରୂପେ ସଂକ୍ଷେପରେ କରାଯାଉଅଛି ।

୧ । ଲୋକ ସଂଖ୍ୟା—ଏ ଯୁକ୍ତିରେ ଭବିଷ୍ୟତ କଳ୍ପିତ ବଙ୍ଗବିହାର ଯେ ଲୋକସଂଖ୍ୟା ଦିଆଯାଇଅଛି ତାହା ୬,୭୫,୨୦,୪୮୪ ନ ହୋଇ ୬,୭୫,୦୦,୪୮୪ ହେବ ( ଭାରତ ଗବର୍ଣ୍ଣମେଣ୍ଟଙ୍କର ନିର୍ଦ୍ଧାରଣର ୨୮ ଦଫା ଦେଖ ) ଯାହା ହେଉ ଏ ଭୁଲରେ କିଛି ଆସେ ଯାଏ ନାହିଁ । ଏ ଯୁକ୍ତିରେ ଲେଖକ ଦେଖାଇଅଛନ୍ତି ଯେ ବଙ୍ଗଳା ସଙ୍ଗେ ମିଶିଲେ ଓଡିଆ ଶତକଡ଼ା ୧୬ ଓ ମଧ୍ୟପ୍ରଦେଶ ସଙ୍ଗେ ଶତକଡ଼ା ୪୦ ହେବ; ପୁଣି ମଧ୍ୟପ୍ରଦେଶର ଅବଶିଷ୍ଟ ୬୦ ଦରେଟି ପ୍ରଧାନ ଜାତିର

ଲୋକ ; ଅଟନ୍ତି ଅର୍ଥାତ୍ ମରହଟ୍ଟା ଓ ହିନ୍ଦୁସ୍ଥାନୀ । ଏ ଯୁକ୍ତିର ମର୍ମ କିଛି ବୁଝା ଯାଉ ନାହିଁ । ବଙ୍ଗଳା ସଙ୍ଗେ ଥାଇ ଓଡ଼ିଆମାନଙ୍କ ସଂଖ୍ୟା ଶତକଡ଼ା ୧୬ ହେଲେ କି ଯଶ ହେବ ଆଉ ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ଶହେ ୪୦ ଓଡ଼ିଆ ହେଲେ କି ଲାଭ ହେବ ? ଲେଖକ କି ମନେ କରନ୍ତି ଯେ ବଙ୍ଗଳା ସଙ୍ଗେ ଥିଲେ କୌଣସି ବିଷୟରେ ମତ ( Vote ) ନିଆଯିବା ସ୍ଥଳରେ ଓଡ଼ିଆଙ୍କର ସଂଖ୍ୟା ଅଳ୍ପ ଥିବାରୁ ସେମାନଙ୍କ ମତ ଅଳ୍ପ ହେବା ଯୋଗୁଁ ପରିତ୍ୟକ୍ତ ହେବ ? ଯେବେ ତାହା ହୁଏ ତେବେ ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ମଧ୍ୟ ଫଳ ତଦ୍ରୂପ ହେବ । ସୁତରାଂ "ଢେଙ୍କୀ ସ୍ୱର୍ଗକୁ ଗଲେ ସୁଦ୍ଧା ଧାନ କୁଟିବ" ପକ୍ଷାନ୍ତରେ ମଧ୍ୟପ୍ରଦେଶ ବାସୀ ଓଡ଼ିଆ ଭିନ୍ନ ଲୋକେ ପ୍ରଧାନତଃ ଦୁଇ ଜାତି—ମର୍ହଟ୍ଟା ଓ ହିନ୍ଦୁସ୍ଥାନୀ । ଏବେ ଦେଖାଯାଉ ଓଡ଼ିଆମାନଙ୍କର ବଙ୍ଗାଳି ମାନଙ୍କ ସଙ୍ଗେ ଥିବା ଭଲ କି ମର୍ହଟ୍ଟା ଓ ହିନ୍ଦୁସ୍ଥାନୀମାନଙ୍କ ସଙ୍ଗେ ମିଶିବା ଭଲ । ପ୍ରଥମତଃ ଭାଷା—ବଙ୍ଗଳା ଓଡ଼ିଆ ଭାଷାରେ ଯେତେ ମେଳ ଓଡ଼ିଆ ମର୍ହଟ୍ଟୀ ବା ଓଡ଼ିଆ ହିନ୍ଦୁସ୍ଥାନୀ ଭାଷାରେ ସେତେ ମେଳ ନାହିଁ । ଓଡ଼ିଆ ନ ଶିଖିଥିବା ବଙ୍ଗାଳି ଅକ୍ଲେଶରେ ଓଡ଼ିଆ ବୁଝିପାରେ ଓ ଓଡ଼ିଆ ସାମାନ୍ୟ ଲୋକେ ସୁଦ୍ଧା ବଙ୍ଗଳାରେ ଯାଇଁ ଘରର ଚାକିରି କି କୁଲିଗିରି କର୍ମ କରି ଆପଣା ମୁନିବମାନଙ୍କର କଥାବାର୍ତ୍ତା ସମ୍ବନ୍ଧରେ ବୁଝି ଚଳପ୍ରଚଳ ହେଉ ଅଛନ୍ତି; ଏଂ ଯୋଗୁଁ ଏ ଚାକିରି କି ବାଣିଜ୍ୟ ବ୍ୟବସାୟ କି ଅନ୍ୟପ୍ରକାର କାର୍ଯ୍ୟ କୌଣସି ବିଷୟରେ କୌଣସି ପ୍ରକାର ଅସୁବିଧା ହେଉ ନାହିଁ; କିନ୍ତୁ ଅଶିକ୍ଷିତ ଲୋକ କଥା ଛାଡ଼ନ୍ତୁ ଆଉ କେତେଜଣ ଶିକ୍ଷିତ ଓଡ଼ିଆ ମର୍ହଟ୍ଟୀ ଭାଷା ବୁଝି ପାରନ୍ତି ? ବଙ୍ଗଳା ଅପେକ୍ଷା ହିନ୍ଦୁସ୍ଥାନୀ ଭାଷାସଙ୍ଗେ ଓଡ଼ିଆ ଭାଷାର ମେଳ ଅଧିକ ନୁହେ, ପୁଣି ମଧ୍ୟପ୍ରଦେଶାନ୍ତର୍ଗତ ଛତିଶଗଡ଼ୀ ହିନ୍ଦୁସ୍ଥାନୀ ଏକପ୍ରକାର କଡ଼ମଡ଼ିଆ ଭାଷା । ଭାଷା ବୁଝିପାରିବା ଦେଶ ମିଳନ ପକ୍ଷେ ଗୋଟିଏ ପ୍ରଧାନ ପ୍ରୟୋଜନୀୟ ବିଷୟ, ପ୍ରଧାନତଃ

ସେହି କାରଣରୁ ବଙ୍ଗଳାଙ୍କ ଓଡ଼ିଶାକୁ ଏଡ଼ାଇଦେବାର କଥା ବାର ପ୍ରସ୍ତାବ ହୋଇଅଛି । ଭାଷା ବିଭ୍ରାଟ ଯୋଗୁଁ ଶାସନପ୍ରଣାଳୀ ବନ୍ଦ ବ୍ୟୟସାଧ୍ୟ ଓ ଅସୁବିଧାଜନକ ହୋଇ ପଡ଼େ, ଏ ଅସୁବିଧା ଓ ବ୍ୟୟ ଗଞ୍ଜାମ ଯୋଗୁଁ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କୁ ବହନ କରିବାକୁ ହେଉଅଛି, ସେ କାରଣରୁ ଗଞ୍ଜାମ ପ୍ରଦେଶକୁ ମାନ୍ଦ୍ରାଜ ହାତାରୁ ପୃଥକ୍ କରିଦେବାର ପ୍ରସ୍ତାବ ହୋଇଅଛି । ପୁଣି ଏହି କାରଣରୁ କେତେଦିନ ପୂର୍ବେ ସମ୍ବଲପୁରର ଅଦାଲତମାନଙ୍କରୁ ଓଡ଼ିଆ ଭାଷା ଉଠିଯାଇ ଯେ ହିନ୍ଦୀ ଭାଷା ପ୍ରଚଳିତ ହୋଇଥିଲା ତାହା ରହିତ ହୋଇ ଉକ୍ତ ଅଦାଲତମାନଙ୍କରେ ପୁନର୍ବାର ଓଡ଼ିଆ ପ୍ରଚଳିତ ହେଲା । ସମସ୍ତ ଓଡ଼ିଶା ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ପୂର୍ବୋକ୍ତ ଅସୁବିଧା ଯୋଗୁଁ ଯେବେ ଏ ଦେଶର କଚେରିମାନଙ୍କରେ ହିନ୍ଦୀ ଭାଷା ପ୍ରଚଳିତ ହୁଏ ତେବେ କି ଦଶା ହେବ ? ପଶ୍ଚାତ୍‌ରେ ଶତାଧିକବର୍ଷ କାଳ ଓଡ଼ିଶା ବଙ୍ଗଳା ସଙ୍ଗେ ଥିଲେ ମଧ କଚେରିର ଭାଷା ଓଡ଼ିଆ ରହିଅଛି ତହିଁରେ ଗବର୍ଣ୍ଣମେଣ୍ଟ କେବେହେଁ କୌଣସି ଅସୁବିଧା ଅନୁଭବ କରି ନାହାନ୍ତି । ହାକିମ ବଦଳ ପକ୍ଷେ ଏ ଅସୁବିଧା ବିଘ୍ନ ବାଧା ଜନକ, କିନ୍ତୁ ସେପରି ଘଟଣା ଓଡ଼ିଶାରେ କଦାପି ହୋଇ ନାହିଁ । ଏପରି ସ୍ଥଳେ ବଙ୍ଗଳାକୁ ଛାଡ଼ି ମଧ୍ୟପ୍ରଦେଶ ସଙ୍ଗେ ମିଶିବା କେତେଦୂର ଯୁକ୍ତିସଙ୍ଗତ ତାହା ପାଠକମାନେ ଭଲ ଦେଖିବେ ।

ଅନ୍ୟର ଗୋଟିଏ କଥା । ମଧ୍ୟପ୍ରଦେଶର ସହର ମାନଙ୍କରେ ଅକ୍‌ଟ୍ରୋଇ ( Octroi ) ବୋଲି ଗୋଟିଏ କର ଧାର୍ଯ୍ୟ ଅଛି । ଏହି କରରୁ ବର୍ଷକେ ପ୍ରାୟ କେତେଲକ୍ଷ ଟଙ୍କା ଆଦାୟ ହୁଏ । ସହରମଧ୍ୟକୁ ଯେ ସକଳ ଖାଦ୍ୟାଦ ଦ୍ରବ୍ୟ ବିକ୍ରୟ ହେବାକୁ ଆସେ ତହିଁ ଉପରେ ମାସୁଲ ନେବାକୁ ଅକ୍‌ଟ୍ରୋଇ ବୋଲାଯାଏ । ଆମ୍ଭେମାନେ ଏଭଳି କର ସ୍ୱପ୍ନରେ ସୁଦ୍ଧା ଜାଣୁ ନାହିଁ । ମଧ୍ୟପ୍ରଦେଶ ସଙ୍ଗେ ମିଶି ଯେବେ ଆମ୍ଭ-ମାନଙ୍କୁ ଏ କରଭାର ବହନ କରିବାକୁ ହୁଏ ତେବେ ଆମ୍ଭମାନଙ୍କର ଦୁର୍ଦ୍ଦଶାର ବାକି ରହିବ ନାହିଁ ।

ଲେଖକଙ୍କର ଦ୍ୱିତୀୟ ଯୁକ୍ତି ଐତିହାସିକ ସମ୍ବନ୍ଧ । ଏ ସମ୍ପର୍କରେ ଲେଖକ କହନ୍ତି "ମଧ୍ୟପ୍ରଦେଶ ସଙ୍ଗେ ଓଡ଼ିଶାର ଐତିହାସିକ ସମ୍ବନ୍ଧ ସମସ୍ତଙ୍କୁ ଜଣା, ପଲ୍ଲୀଗ୍ରାମର ସ୍ଥାନେ ଅଦ୍ୟାପି ଅନେକ ବୃଦ୍ଧ ବ୍ୟକ୍ତି ଅଛନ୍ତି ଯେଉଁମାନେ ପିତୃପିତାମହଙ୍କଠାରୁ ତଦାନୀନ୍ତନ ରାଜଧାନୀ ନାଗପୁରର କଥା ଶୁଣି ମଧ୍ୟପ୍ରଦେଶ ସଙ୍ଗେ ଓଡ଼ିଶାର ସମ୍ବନ୍ଧ ବର୍ତ୍ତମାନ ପର୍ଯ୍ୟନ୍ତ ମନେ ରଖିଅଛନ୍ତି, ଭାରତ ଗବର୍ଣ୍ଣମେଣ୍ଟ ମଧ୍ୟ ତାଙ୍କ ପକ୍ଷରେ ଏହି ସମ୍ବନ୍ଧ ଅସ୍ୱୀକାର କରି ନାହାନ୍ତି ଏବଂ ମଧ୍ୟପ୍ରଦେଶ ସଙ୍ଗେ ଓଡ଼ିଶା ସମ୍ମିଳନ ସପକ୍ଷେ ଏହା ଅନ୍ୟତମ କାରଣ ବୋଲି ଲେଖିଅଛନ୍ତି । ଗବର୍ଣ୍ଣମେଣ୍ଟଙ୍କ କହିବାନୁସାରେ ଉପସ୍ଥିତ ଘଟନାରେ ଏହି ଐତିହାସିକ ସମ୍ବନ୍ଧର ଯେପରି କୌଣସି ଗୁରୁତ୍ୱ ନ ଥିଲେହେଁ ବଙ୍ଗଳା ସହିତ ତୁଳନାରେ ଏହା ଉଲ୍ଲେଖ ନ କରିବା ଏକପ୍ରକାର ତ୍ରୁଟି ।।"

ଲେଖକ ଅବଲୀଳାକ୍ରମେ ଅତି ସାବଧାନରେ ଲକ୍ଷିତ ବନ୍ଧୁକାଳର ପକ୍ଷପାତ ଫଳ ଗବର୍ଣ୍ଣମେଣ୍ଟଙ୍କ ନିର୍ଦ୍ଧାରଣରେ ଯେ ତ୍ରୁଟି ଦେଖିଅଛନ୍ତି ଦେଖାଯାଉ ତାହାର ଗୁରୁତ୍ୱ କେତେ ? ମଧ୍ୟପ୍ରଦେଶ ସଙ୍ଗେ ଓଡ଼ିଶାର ଐତିହାସିକ ସମ୍ବନ୍ଧ ଦେଖାଇବା ପାଇଁ ଗଲେ ଅଗ୍ରେ ମଧ୍ୟପ୍ରଦେଶର ଇତିହାସର କିଞ୍ଚିତ୍ ଆଲୋଚନା କରିବାର ଉଚିତ, ଅତଏବ ଅତି ସଂକ୍ଷେପରେ ସେ ବିଷୟ ନିମ୍ନେ ଉଲ୍ଲେଖ କରା ଯାଉଅଛି । ସେ ପ୍ରଦେଶର ପୁରାବୃତ୍ତ ସମ୍ପୂର୍ଣ୍ଣରୂପେ ଅପ୍ରାପ୍ତ—ଖ୍ରୀଷ୍ଟାବ୍ଦର ପଞ୍ଚମ ଶତାବ୍ଦୀରେ ସାତପୁର ଉଚ୍ଚପ୍ରଦେଶରେ ଯବନମାନେ ରାଜତ୍ୱ କରୁଥିଲେ—ଦଶଠାରୁ ତେର ଶତାବ୍ଦୀ ପର୍ଯ୍ୟନ୍ତ ଚନ୍ଦ୍ରବଂଶୀୟ ରାଜପୁତମାନେ ଜବଲପୁରର ଚତୁଃପାର୍ଶ୍ୱସ୍ଥ ରାଜ୍ୟଖଣ୍ଡରେ ଓ ମାଲେୟାର ପ୍ରମାରର ରାଜାମାନେ ସାତପୁରର ଦକ୍ଷିଣର ରାଜ୍ୟଖଣ୍ଡରେ ରାଜତ୍ୱ କରୁଥିଲେ—ତହିଁ ଉତ୍ତାରୁ ପ୍ରାୟ ସମଗ୍ର ପ୍ରଦେଶ ଗଣ୍ଡମାନଙ୍କର ଅଧୀନସ୍ଥ ହେଲା ଏମାନଙ୍କର ଅଧୀନରେ ପ୍ରାୟ ଅନେକ

ଉନ୍ନତ ହୋଇଥିଲା, ତହିଁ ଉତ୍ତାରୁ ୧୬୪୧-୧୭୫୧ ଶତାବ୍ଦ ମଧ୍ୟରେ ଭୋନସ୍ଲା ବଂଶୀୟ ରାଜାମାନେ ଦେଓଗଡ଼, ଚାନ୍ଦା ଓ ଛତିଶଗଡ଼ରେ ରାଜତ୍ୱ କଲେ ଏବଂ ଗଣ୍ଡବଂଶୀୟ ଶେଷରାଜା ୧୭୮୧ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନଙ୍କଦ୍ୱାରା ପରାସ୍ତ ହେଲେ । ଏହି ସମୟରୁ ମଧ୍ୟପ୍ରଦେଶର ଇତିହାସ ସଙ୍ଗେ ଓଡ଼ିଶାର ଇତିହାସର ସମ୍ପର୍କ ହେଲା । ମରହଟ୍ଟାମାନଙ୍କ ରାଜତ୍ୱ ଏତେ ଉତ୍ପୀଡ଼ନ ହୋଇଥିଲା ଯେ ପିଣ୍ଡାରି ନାମରେ ଏକଦଳ ଦସ୍ୟୁ ଏ ରାଜତ୍ୱ କାଳରେ ଉଦ୍ଭୂତ ହୋଇ ଲୁଟପାଟ ଆରମ୍ଭ କରିବାକୁ ଲାଗିଲେ । ମର୍ହଟ୍ଟାମାନଙ୍କର ରାଜତ୍ୱ କି ମଧ୍ୟପ୍ରଦେଶ କି ଓଡ଼ିଶା କୌଣସିଠାରେ ଶୃଙ୍ଖଳିତ ନ ଥିଲା । ଏମାନେ ନିର୍ଦ୍ଦୟ ଭାବରେ ଦେଶକୁ ଲୁଟପାଟ କରି ଏପରି ଧ୍ୱସ୍ତ ବିଧ୍ୱସ୍ତ କରୁଥିଲେ ଯେ କୌଣସିଠାରେ ମୁଠିଏ ଚାଉଳ ମିଳିବାର ସମୟରେ କଠିନ ହୋଇଥିଲା । ଏମାନଙ୍କର ଦୌରାତ୍ମ୍ୟ ଓଡ଼ିଶାରେ ମଧ୍ୟ ବିଲକ୍ଷଣ ଅନୁଭୂତ ହୋଇଥିଲା । ଲେଖକ ଯେ କହିଅଛନ୍ତି ଯେ ପଲ୍ଲିଗ୍ରାମର ସ୍ଥାନେ ସ୍ଥାନେ ଅଦ୍ୟାପି ଅନେକ ବୃଦ୍ଧବ୍ୟକ୍ତି ଅଛନ୍ତି ଯେଉଁମାନେ ପିତୃ ପିତାମହମାନଙ୍କଠାରୁ ତଦାନୀନ୍ତନ ରାଜଧାନୀ ନାଗପୁରର କଥା ଶୁଣି ମଧ୍ୟପ୍ରଦେଶ ସଙ୍ଗେ ଓଡ଼ିଶାର ସମ୍ବନ୍ଧ ବର୍ତ୍ତମାନ ପର୍ଯ୍ୟନ୍ତ ମନେ ରଖିଅଛନ୍ତି” ତାହା ବଡ଼ ଠିକ, ମର୍ହଟ୍ଟାମାନଙ୍କର ଉତ୍ପାତ ତିନିପୁରୁଷ ପର୍ଯ୍ୟନ୍ତ ଓଡ଼ିଆମାନଙ୍କର ମନରୁ ପାସୋର ଯାଇ ନାହିଁ । ଏ ପର୍ଯ୍ୟନ୍ତ “ମର୍ହଟ୍ଟା” ଶବ୍ଦଟା ଓଡ଼ିଶାରେ ନିକୃଷ୍ଟତା ଓ ଭୟ ସୂଚକ ଯେପରିକି ‘ ମର୍ହଟ୍ଟି ଘୋଡ଼ା—ଚତୁର ଘୋଡ଼ା ” “ମର୍ହଟ୍ଟି ବୁଢ଼ା –ଶିକ୍ଷିତ ଧୂର୍ତ୍ତ” । ଏବେ ଓଡ଼ିଶାର ଇତିହାସରୁ ଦୁଇ ଏକ କଥା ଉଲ୍ଲେଖ କରି ଦେଖାଯାଉ ଏହାର ସମ୍ବନ୍ଧ ମଧ୍ୟପ୍ରଦେଶ ଇତିହାସ ସଙ୍ଗେ କେତେଦୂର ଗାଢ଼ । ଖ୍ରୀଷ୍ଟାବ୍ଦ ୧୫୬୮ ସାଲ ପର୍ଯ୍ୟନ୍ତ ଓଡ଼ିଶା ଦେଶୀୟ ରାଜାମାନଙ୍କ ଅଧୀନରେ ଥିଲା । ଏହି ବର୍ଷ କଳାପାହାଡ଼ ଏହାକୁ ମୁସଲମାନ ରାଜ୍ୟଭୁକ୍ତ କଲା । ଏହି ସମୟରୁ ୧୭୫୧

ସାଲ ପର୍ଯ୍ୟନ୍ତ ଏହା ମୁସଲମାନମାନଙ୍କ ହସ୍ତରେ ଥିଲା । ସେହି ସାଲରେ ବଙ୍ଗଳାର ନବାବ ଓ ମହାରାଷ୍ଟ୍ରମାନଙ୍କ ମଧ୍ୟରେ ଯେ ସନ୍ଧି ହେଲା ସେହି ସନ୍ଧିର ସର୍ତ୍ତ ଅନୁସାରେ ମହାରାଷ୍ଟ୍ରମାନେ ବଙ୍ଗଳା ରାଜସ୍ୱର ଚୌଥ ଓ ଓଡ଼ିଶା ପ୍ରଦେଶ ପ୍ରାପ୍ତ ହେଲେ । ପୁଣି ୧୮୦୩ ସାଲରେ ଇଂରାଜମାନେ ଏହା ଅଧିକାର କଲେ । ଅତଏବ ଦେଖାଯାଏ ୧୭୫୧ ସାଲ ଠାରୁ ୧୮୦୩ ସାଲ ପର୍ଯ୍ୟନ୍ତ ମହାରାଷ୍ଟ୍ରମାନେ ୫୨ବର୍ଷ କାଳ ଓଡ଼ିଶାରେ ରାଜତ୍ୱ କରିଥିଲେ । ଏହି କାଳ ମଧ୍ୟରେ ମଧ୍ୟପ୍ରଦେଶର ଇତିହାସ ସଙ୍ଗେ ଓଡ଼ିଶାର ଇତିହାସର ସମ୍ବନ୍ଧ । ମହାରାଷ୍ଟ୍ରମାନେ ଓଡ଼ିଶାରେ ଏପରି କୌଣସି କୀର୍ତ୍ତି ରଖି ଯାଇ ନାହାନ୍ତି ଯଦ୍ଦ୍ୱାରା ସେମାନଙ୍କର ନାମ ଏ ଦେଶରେ ଚିରସ୍ମରଣୀୟ ହୋଇପାରେ, ତେବେ କଟକର ପୂର୍ବରେ ଗଡ଼ଗଡ଼ିଆଘାଟରେ ଯେ ପୋଡ଼ାଯାଗା ଅଛି ତାହା ଏତେଦୂର ଉପକାରୀ, ବା ଶିଳ୍ପନୈପୁଣ୍ୟ ପ୍ରଦର୍ଶକ, ବା ବୃହତ୍ ନୁହେଁ ଯହିଁରେ ବା ଏହାର ନିର୍ମାତା ସ୍ମରଣୀୟ ହୋଇପାରେ । କିନ୍ତୁ ମହାରାଷ୍ଟ୍ରମାନଙ୍କର ଦୌରାତ୍ମ୍ୟ ଅବଶ୍ୟ ଓଡ଼ିଶାରୁ ଏ ପର୍ଯ୍ୟନ୍ତ ପାସୋର ଯାଇ ନାହିଁ । ଏହିତ ଗଲା ଐତିହାସିକ ସମ୍ପର୍କ । ଏଥିପାଇଁକି ଓଡ଼ିଆମାନେ ମଧ୍ୟପ୍ରଦେଶ ସଙ୍ଗେ ମିଶିବା କେତେଦୂର ବାଞ୍ଛନୀୟ ତାହା ପାଠକମାନେ ସ୍ୱୟଂ ଦେଖନ୍ତୁ ।

ତୃତୀୟ ପ୍ରାକୃତିକ ଅବସ୍ଥିତି । ଏ ପ୍ରସଙ୍ଗରେ ଲେଖକ କହନ୍ତି କି "ଓଡ଼ିଶା ଏପରି ଭାବରେ ଅବସ୍ଥିତ ଯେ ଏହା ବଙ୍ଗଳାର ପ୍ରାକୃତିକ ଅଙ୍ଗପରି ଜଣା ପଡ଼େ ନାହିଁ । ଦକ୍ଷିଣ ପଶ୍ଚିମ ଦିଗରେ ଏହା ବଙ୍ଗଳାର ବର୍ଦ୍ଧିତ ପ୍ରସାରଣ ମାତ୍ର । ଏହି ହେତୁରୁ କିଛି ଦିନ ଉର୍ଦ୍ଧ୍ୱ ଏହାକୁ ମଧ୍ୟପ୍ରଦେଶ ଅନ୍ତର୍ଭୁକ୍ତ କରିବା ଲାଗି କର୍ତ୍ତୃପକ୍ଷମାନେ ଏକାଧିକ ଥର ପ୍ରସ୍ତାବ କରିଥିଲେ । ଗବର୍ଣ୍ଣମେଣ୍ଟ ମଧ୍ୟ ଏହା ତାଙ୍କ ପକ୍ଷରେ ସ୍ପଷ୍ଟ ଉଲ୍ଲେଖ କରିଅଛନ୍ତି । ବାସ୍ତବରେ ମଧ୍ୟପ୍ରଦେଶ ସଙ୍ଗେ ଓଡ଼ିଶା ମିଶିଲେ ତାହାର ଏ ବିକୃତ ଆକାର ରହିବ ନାହିଁ । ତାହା ମଧ୍ୟପ୍ରଦେଶର ଏକ ପ୍ରାକୃତିକ ସୁନ୍ଦର ଅଙ୍ଗପରି ଦେଖାଯିବ । ମଧ୍ୟପ୍ରଦେଶ ଏବଂ

ଓଡ଼ିଶାର ପ୍ରାକୃତିକ ଅବସ୍ଥାରେ କୌଣସି ବିଶେଷ ପାର୍ଥକ୍ୟ ନାହିଁ । ଏମନ୍ତ କି ମଧ୍ୟପ୍ରଦେଶର ସୀମାନ୍ତ ବାମଣ୍ଡା କିମ୍ବା ସୋନପୁର ରାଜ୍ୟ ଅତିକ୍ରମ କରି କେହି ଯାଜନଗରିଙ୍କ ଓଡ଼ିଶାରେ ପ୍ରବେଶ କଲେ ଜଳ-ବାୟୁ କିମ୍ବା ପ୍ରାକୃତିକ ଦୃଶ୍ୟ ପ୍ରଭୃତି କୌଣସି ନୈସର୍ଗିକ ପ୍ରଭେଦ ଦେଖି ପାରିବେ ନାହିଁ; ବରଂ ଏକ ପ୍ରଦେଶ ଅନ୍ୟର ସ୍ୱାଭାବିକ ବିକୃତ ଅଙ୍ଗପରି ବୋଧ ହେବ । ଅନ୍ତତଃ ମଧ୍ୟ ଓଡ଼ିଶା ଏବଂ ମଧ୍ୟ-ପ୍ରଦେଶର ପ୍ରଧାନ ନଦୀ ମହାନଦୀଦ୍ୱାରା ଉଭୟ ପ୍ରଦେଶର ସ୍ୱାଭାବିକ ସଂଯୋଗ ନିବିଡ଼ ବିଦ୍ୟମାନ ରହିଅଛି । ମଧ୍ୟ-ପ୍ରଦେଶର ଯଦି କୌଣସି କାଳେ ସମୁଦ୍ର ସହିତ ସଂଯୋଗ ରଖିବା ଆବଶ୍ୟକ ପଡ଼େ ତାହା ହେଲେ ଓଡ଼ିଶାର ମିଶ୍ରଣ ବ୍ୟତିରେକେ ତାହା କଦାପି ସମ୍ଭବ ନୁହେ ।

ପକ୍ଷାନ୍ତରେ ସମୁଦ୍ର ଛଡ଼ା ବଙ୍ଗଳା ସଙ୍ଗେ ଓଡ଼ିଶାର ଅନ୍ୟ କୌଣସି ପ୍ରାକୃତିକ ସଂଯୋଗ ନାହିଁ, ବରଂ ଉଭୟଙ୍କ ମଧ୍ୟରେ ସୁବର୍ଣ୍ଣରେଖା କିମ୍ବା କାନ୍ଥି ଓଡ଼ିଶା ସାମିଲ କଲେ କାଂଶ ବାଂଶ ନଦୀ ସ୍ୱାଭାବିକ ବ୍ୟବଧାନରୂପେ ବିଦ୍ୟମାନ ।”

ଭାରତବର୍ଷର ମାନଚିତ୍ର ଦେଖିଲେ ଭଲରୂପେ ବୁଝାଯିବ ଯେ ଓଡ଼ିଶା ବଙ୍ଗଳାର ବିକୃତାଙ୍ଗ ନୁହେ, ବରଂ ମଧ୍ୟପ୍ରଦେଶରୁ ସମ୍ବଲ-ପୁର ଓ ତହିଁର ଉତ୍ତର ପୂର୍ବଭାଗ ବଙ୍ଗଳା ସଙ୍ଗେ ମିଶିଲେ ବଙ୍ଗଳାର ଅଙ୍ଗ ସୁଡୌଲ ହୋଇଯିବ । ବର୍ତ୍ତମାନ ବରଂ ମଧ୍ୟପ୍ରଦେଶର ଉକ୍ତ ଅଂଶ ବଙ୍ଗଳା ଭିତରେ ପଶିଯାଇଅଛି । ଅବଶ୍ୟ ବେରାର ସଙ୍ଗେ ମଧ୍ୟପ୍ରଦେଶ ମିଶିଲେ ଆକାର ଭଲ ଦିଶିବ ।

ମଧ୍ୟପ୍ରଦେଶ ଓ ଓଡ଼ିଶାର ପ୍ରାକୃତିକ ଅବସ୍ଥାରେ କୌଣସି ବିଶେଷ ପାର୍ଥକ୍ୟ ନାହିଁ ବୋଲି ଲେଖକ ଯାହା କହିଅଛନ୍ତି ତାହା ବରଂ ଓଡ଼ିଶାର ଗଡ଼ଜାତ ଅଂଶ ପକ୍ଷେ କେତେକ ପରିମାଣରେ ଖଟି ପାରେ କିନ୍ତୁ ମୋଗଲବନ୍ଦି ସଙ୍ଗେ ବଙ୍ଗଳାର ସୌସାଦୃଶ୍ୟ ଅଧିକ ଏ

ବିଷୟରେ କେବଳ ଗୋଟିକେତେ ଉଦାହରଣ ଦେଲେ ଲେଖକଙ୍କ ଭ୍ରମ ଉତ୍ତମରୂପେ ପ୍ରକାଶ ପାଇବ । ବଙ୍ଗଳା ଓ ଓଡ଼ିଶାରେ ନଡ଼ିଆଗଛ ଉତ୍ତମରୂପେ ବଢ଼େ, ମଧ୍ୟପ୍ରଦେଶରେ ନଡ଼ିଆ ହୁଏ ନାହିଁ । ଏଥିରୁ ସ୍ପଷ୍ଟ ଦେଖାଯାଏ ଯେ ଓଡ଼ିଶାର ପ୍ରାକୃତିକ ଅବସ୍ଥା ମଧ୍ୟପ୍ରଦେଶ ସଙ୍ଗେ ମେଳ ନ ଥାଇ ବଙ୍ଗଳା ସଙ୍ଗେ ମିଳୁଅଛି । ନଡ଼ିଆଗଛର ଉତ୍ପତ୍ତି ଓ ବୃଦ୍ଧି ଦେଶର ପ୍ରାକୃତିକ ଅବସ୍ଥା ଉପରେ ନିର୍ଭର କରେ । ପୁଣି ବଙ୍ଗଳାପରି ଓଡ଼ିଶାର ( ମୋଗଲବନ୍ଦି ମାହାଲର ) ମାଟି ତଳେ ବାଲି ମିଳେ ମଧ୍ୟପ୍ରଦେଶରେ ଉପରୁ ଅଳ୍ପ ମାଟି କାଢ଼ିଦେଲେ ତଳେ ପଥର ବାହାରେ ।

ମଧ୍ୟପ୍ରଦେଶର ଅଧିକାଂଶ ଭୂମି ପଥୁରିଆ, ଓଡ଼ିଶାର ଭୂମି ମାଟି ଓ ବାଲି । ମଧ୍ୟପ୍ରଦେଶରେ ନଦୀର ସଂଖ୍ୟା ଅଳ୍ପ ଓ ସେ ନଦୀମାନ ଅପ୍ରଶସ୍ତ, କିନ୍ତୁ ଓଡ଼ିଶାରେ ବଡ଼ବଡ଼ ନଦୀର ସଂଖ୍ୟା ବହୁତ; ଓଡ଼ିଶାର ଅଧିକାଂଶ ଭୂମି ସମୁଦ୍ରର ନିକଟବର୍ତ୍ତୀ ଥିବାରୁ ତହିଁର ଜଳ-ବାୟୁ ଲୁଣା, ମଧ୍ୟପ୍ରଦେଶର ଜଳ ବାୟୁ ମିଠା, ବାତଜ୍ୱର (ଶ୍ଳୀପଦ ରୋଗ ) ଓ କୋଷବୃଦ୍ଧି ରୋଗ ଓଡ଼ିଶାରେ ପ୍ରବଳ ଏପରି ରୋଗର ସଂଖ୍ୟା ମଧ୍ୟପ୍ରଦେଶରେ ଅତି ବିରଳ । ଏହି ସକଳ ଓ ଅନ୍ୟାନ୍ୟ ଘଟନାରୁ ସ୍ପଷ୍ଟ ଦେଖାଯିବ ଯେ ଓଡ଼ିଶାର ପ୍ରାକୃତିକ ଅବସ୍ଥା ମଧ୍ୟପ୍ରଦେଶ ସଙ୍ଗେ ମେଳ ନ ଥାଇ ବରଂ ବଙ୍ଗଳା ସଙ୍ଗେ ଅଧିକାଂଶରେ ମିଳେ । ମହାନଦୀ ମଧ୍ୟପ୍ରଦେଶରୁ ବାହାରି ଓଡ଼ିଶାରେ ସମୁଦ୍ରରେ ପଡ଼ିଅଛି ସତ୍ୟ କିନ୍ତୁ ମଧ୍ୟପ୍ରଦେଶ ମଧ୍ୟରେ ଏହାର ଯେଉଁ ଅଂଶ ଅଛି ତାହା ଅକର୍ମଣ୍ୟ, ବର୍ଷକ ମଧ୍ୟରେ ପ୍ରାୟ ଚାରିମାସ ଏଥିରେ ନୌକା ଗତାୟାତ କରେ, ଅନ୍ୟ ସମୟରେ ମଧ୍ୟପ୍ରଦେଶରୁ ଓଡ଼ିଶାକୁ ଆସିବାକୁ ହେଲେ ଶ୍ୱାପଦସଙ୍କୁଳ ପର୍ବତ ଅରଣ୍ୟର ଭିତରେ ପଦବ୍ରଜେ ଆସିବାକୁ ହୁଏ, ନଇଲେ ରେଳବାଟେ କଟକ ଗଲା ପରି ବେଙ୍ଗଲ-ନାଗପୁର ରେଲ ପଥରେ ବଙ୍ଗଳାର ମଧ୍ୟ ଦେଇ ବୁଲିଆସିବାକୁ ହୁଏ ।

ମଧ୍ୟପ୍ରଦେଶାନ୍ତର୍ଗତ ମହାନଦୀର ଅଂଶ ସ୍ଥାନେ ଅତି ଅପ୍ରଶସ୍ତ ଓ ତହିଁ ମଧ୍ୟରେ ବୃହତ୍ ପ୍ରସ୍ତର ଖଣ୍ଡମାନ ( ବଗମ ) ରୁଦ୍ଧ ରହିଥିବାରୁ ବର୍ଷାକାଳରେ ମଧ୍ୟ ତହିଁରେ ନୌକା ଗତାୟାତ ପକ୍ଷେ ବିପଦ ଘଟେ, ପୁଣି ସମ୍ବଲପୁରର କିଛି ଉପରୁ ଅହିଁର ଉପରକୁ ନୌକା ଯିବା ଆସିବାର ପଥ ନାହିଁ ବୋଲିଲେ ଚଳେ । ସୁତରାଂ ସମ୍ବଲପୁରକୁ ବାଦ ଦେଲେ ମହାନଦୀର ଆଉ ଯେ ଅଂଶ ମଧ୍ୟପ୍ରଦେଶ ମଧ୍ୟରେ ଅଛି ତଦ୍ୱାରା ବାଣିଜ୍ୟାଦିର କୌଣସି ଉପକାର ହୁଏ ନାହିଁ । ମହାନଦୀ ବାଟେ ଯେ ନୌକାମାନ ଗତାୟାତ କରେ ସେମାନ ବଡ଼ ଅପ୍ରଶସ୍ତ ( ଗୌଡ଼ାଡଙ୍ଗା ଏ ପଥର ଉପଯୋଗୀ ନୁହେ ) ସୁତରାଂ ତହିଁରେ ଅଳ୍ପ ଦ୍ରବ୍ୟ ବୋଝାଇ ହୋଇଥାଏ । ମଧ୍ୟପ୍ରଦେଶ ସଙ୍ଗେ ଓଡ଼ିଶା ମିଶିଲେ ମହାନଦୀର ବାଣିଜ୍ୟର ଯେ ଅପର ଉନ୍ନତି ହେବ ତାହା ବୃଝା ପଡ଼ୁ ନାହିଁ କି ଲେଖକ ତାହା ଦେଖାଇ ଦେଇ ନାହାନ୍ତି, ଶାସନ ପରିବର୍ତ୍ତନ ଯୋଗୁଁ ମହାନଦୀର କାଟି, ଖୋଳି ଚଉଡ଼ା ଓ ଗଭୀର କରାଯିବ ବୋଲି କି ସେ ମନେ କରୁଅଛନ୍ତି ? ଓଡ଼ିଶା ଯେଉଁ ଶାସନାଧୀନରେ ରହୁନା କାହିଁକି ମହାନଦୀ ଯେପରି ଅଛି ସେହିପରି ଥିବ । ବର୍ତ୍ତମାନ ବେଙ୍ଗଲ ନାଗପୁର ରେଲଦ୍ୱାରା ମଧ୍ୟପ୍ରଦେଶ, ବଙ୍ଗଳା ଓ ଉତ୍ତରପଶ୍ଚିମ ପ୍ରଦେଶମାନଙ୍କ ସଙ୍ଗେ ଯୁକ୍ତ ହୋଇଥିବାରୁ ମହାନଦୀର ବାଣିଜ୍ୟ କମି ଯାଇଅଛି ଭବିଷ୍ୟତକୁ ଏହାର ଉନ୍ନତି ହେବାର ଆଶା ନାହିଁ । ମଧ୍ୟପ୍ରଦେଶ ସଙ୍ଗେ ଓଡ଼ିଶା ରେଲଦ୍ୱାରା ଯୁକ୍ତ ହେଲେ ସୁଦ୍ଧା ମଧ୍ୟପ୍ରଦେଶର ପଣ୍ୟଦ୍ରବ୍ୟ ଓଡ଼ିଶାକୁ ଆସିବ ନାହିଁ କି ଏଠାର ଦ୍ରବ୍ୟ ସେଠାକୁ ଯିବ ନାହିଁ ତହିଁର କାରଣ ଏହି କି ମଧ୍ୟପ୍ରଦେଶରୁ ଚାଉଳ, ଗହମ, ମୁଗ, କରଡ ଓ କାଠ ପ୍ରଭୃତି ବଙ୍ଗଦେଶକୁ ରପ୍ତାନି ହୁଏ ଓଡ଼ିଶାରୁ ମଧ୍ୟ ସେହି ସକଳ ଦ୍ରବ୍ୟ ଅନ୍ୟ ସ୍ଥାନକୁ ପଠାଯାଏ, ଏପରି ସ୍ଥଳେ ସେ ଦ୍ରବ୍ୟମାନ ମଧ୍ୟପ୍ରଦେଶକୁ ଓଡ଼ିଶାବାଟେ କାହିଁକି ବିଦେଶକୁ

ଯିବ ? ସୁତରାଂ ମଧ୍ୟପ୍ରଦେଶ ସଙ୍ଗେ ଓଡିଶା ମିଶିଲେ ମଧ୍ୟ ଏ ଦୁଇ ପ୍ରଦେଶ ଯେ ସ୍ୱତନ୍ତ୍ର ରେଲଦ୍ୱାରା ଯୁକ୍ତ ହେବ ତହିଁର ଆଶା ଅତି ଅଳ୍ପ, କାରଣ କ ଯାତ୍ରୀ (Passanger) ବୋହିବାରେ ରେଲ-ବେରେ ଲାଭ ହୁଏ ନାହିଁ, (goods)ବାଣିଜ୍ୟ ଦ୍ରବ୍ୟର ଯେ ଯେ ପ୍ରଦେଶ ମଧ୍ୟରେ ଗତାୟାତ ଅଧିକ ସେହି ପ୍ରଦେଶ ମଧ୍ୟରେ ରେଲ ବସାଇବାରେ ଲାଭ ହୁଏ ।

ପକ୍ଷାନ୍ତରରେ ଓଡିଶା ବର୍ତ୍ତମାନ ଏକା ବଙ୍ଗଳା ନାହିଁ ମାନ୍ଦ୍ରାଜ ପ୍ରଭୃତି ସମସ୍ତ ଦକ୍ଷିଣଭାରତବର୍ଷ ସଙ୍ଗେ ରେଲ ସଡକ ଓ ସମୁଦ୍ରଦ୍ୱାରା ଯୁକ୍ତ । ଏ ତିନପ୍ରଦେଶ ମଧ୍ୟରେ ବାଣିଜ୍ୟ ବୋଲ ଯାତ୍ରୀ ବୋଲ ସମସ୍ତର ସକଳ ସମୟରେ ଗତାୟାତର ସୁବିଧା ରହିଅଛି, ପୁଣି ଯେଉଁ ପ୍ରକାର ଯେତେ ଦ୍ରବ୍ୟ ଯେ କୌଣସି ସମୟରେ ଅତ୍ୟଳ୍ପ ବ୍ୟୟରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ଆସିବା କରୁଅଛି । ଯେବେ ଦେଶ ମିଶ୍ରଣ ସଙ୍ଗେ ବାଣିଜ୍ୟାଦିର କୌଣସି ସମ୍ବନ୍ଧ ଥାଏ ତେବେ ଏ ସୁବିଧା ଛାଡିବାକୁ କେଉଁ ନିର୍ବୋଧ ଉପଦେଶ ଦେଇପାରେ ?

ଲେଖକ ଅନ୍ୟତ୍ର କହିଅଛନ୍ତି ଯେ କାଂଶ ବାଂଶ ନଦୀ ଓଡିଶା ଓ ବଙ୍ଗଳା ମଧ୍ୟରେ ସ୍ୱାଭାବିକ ବ୍ୟବଧାନ ରୂପେ ବର୍ତ୍ତମାନ । ଏ ଯୁକ୍ତିର ପଟାନ୍ତର ନାହିଁ । ଲେଖକଙ୍କର ବାଡିଆଡ଼େ ଯେଉଁ ଯୋର ଅଛି ସେ ତାଙ୍କର ଦେଶ ଓ ଆଶିଆ ଖଣ୍ଡ ମଧ୍ୟରେ ସ୍ୱାଭାବିକ ବ୍ୟବଧାନ ସନ୍ଦେହ ନାହିଁ । କାଂଶ ବାଂଶ ନଦୀ ଜଗନ୍ନାଥ ସଡକର ପୁଲ ତଳେ ବୋହି ଯାଉଅଛି ସୁତରାଂ ସେ ଯେ ଗୋଟିଏ ବଡ଼ ସ୍ୱାଭାବିକ ବ୍ୟବଧାନ ଏଥିରେ ଆଶ୍ଚର୍ଯ୍ୟ କଣ ? ଗୋଟିଏ ଢଗ ଅଛି "ହଳଦ ମଣ୍ଡାମଣ୍ଡି, ସୁବର୍ଣ୍ଣରେଖା ପାର ହେଲେ କୁଟୁମ୍ବ ଦେଖାଦେଖି" ବୋଧହୁଏ ଲେଖକଙ୍କର ଏହି ଢଗଟି ମନେ ପଡିଥିଲା ତେଣୁ ସେ ଉପରୋକ୍ତ ଅକାଟ୍ୟ ଯୁକ୍ତିର ଉଲ୍ଲେଖ କରଅଛନ୍ତି । ଲେଖକ ! ଧନ୍ୟ ଆପଣ ! ଆଖିରେ ଧୂଳି ପକାଇ ଲୋକଙ୍କୁ ଫସଲାଇବା ପକ୍ଷେ ଆପଣ

ବଡ଼ ବାହାଦୁର ସନ୍ଦେହ ନାହିଁ । ପୁଣି ଓଡ଼ିଶା ସଙ୍ଗେ ମିଶିଲେ ମଧ୍ୟପ୍ରଦେଶ ଯେ ଏକ ସମୟରେ ବନ୍ଦର ପାଇ ପାରିବ ତାହା ମଧ୍ୟ ଠିକ ନୁହେ । ଓଡ଼ିଶାରେ ଭଲ ବନ୍ଦର ନାହିଁ, ଗୃନ୍ଦବାଲି ବନ୍ଦରକୁ ବନ୍ଦର ବୋଲାଯାଇ ନ ପାରେ ତାହାର ଅବସ୍ଥା ପ୍ରକୃତ ବାଣିଜ୍ୟୋପଯୋଗୀ ନୁହେ । ଗବର୍ଣ୍ଣମେଣ୍ଟ ଏ ବିଷୟରେ ଅନେକ ଚେଷ୍ଟା କରି ଅଛନ୍ତି । ପରନ୍ତୁ ମଧ୍ୟପ୍ରଦେଶରେ କେବଳ ୬୮୩୩ ମାଇଲ ମାତ୍ର ସଡ଼କ ଅଛି । ସଡ଼କ ପ୍ରସ୍ତୁତ କରିବାପାଇଁ ସେ ଦେଶର ଭୂମି ଉପଯୋଗୀ ନୁହେ । ସେ ପ୍ରଦେଶରେ ଜଳପଥ ମୋଟରେ ୧୬୭୩ ମାଇଲ । ଏବେ ପାଠକେ ବଙ୍ଗଳା ସଙ୍ଗେ ମଧ୍ୟପ୍ରଦେଶକୁ ତୁଳନା କରି ଦେଖ ଓଡ଼ିଶା କାହା ସଙ୍ଗେ ରହିବା ଭଲ ।

ଏବେ ଦେଖାଯାଉ ଧର୍ମ ବିଷୟରେ ଲେଖକଙ୍କର ଚତୁର୍ଥ ଯୁକ୍ତି କେତେଦୂର ଟାଣ । ଏଠାରେ ଧପାଧପି ଚଳ ପାରିଲେ ନାହିଁ, ସୁତରାଂ ସେ ଅଗତ୍ୟା ମୁଣ୍ଡ କୁଣ୍ଡେଇବାକୁ ଆରମ୍ଭ କରିଅଛନ୍ତି, ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କର ନାମ ସଙ୍କୀର୍ତ୍ତନର ଶବ୍ଦରେ ଲେଖକଙ୍କର ଅବାଞ୍ଛିତ କର କଲ୍ପନା ତିଷ୍ଠି ପାରିନାହିଁ ତେଣୁ ଅଗତ୍ୟା ସେ ବାଧ୍ୟ ହୋଇ ସ୍ୱୀକାର କରିଅଛନ୍ତି ଯେ "ବଙ୍ଗଳା ସଙ୍ଗେ ଓଡ଼ିଶାର ସ୍ୱାଭାବିକ ସଂଯୋଗ ଘନିଷ୍ଠ ନ ଥିଲେହେଁ ଅନ୍ୟ ଏକ ସୂତ୍ରରେ ଉଭୟେ ଦୃଢ଼ରୂପେ ଆବଦ୍ଧ, ତାହା ଧର୍ମ । ବଙ୍ଗଳାର ବୈଷ୍ଣବ ଧର୍ମ ପ୍ରବର୍ତ୍ତକ ଭଗବାନ୍ ଶ୍ରୀକୃଷ୍ଣ ଚୈତନ୍ୟଦେବ ଉତ୍କଳୀୟ ବ୍ରାହ୍ମଣ ବଂଶୋଦ୍ଭବ ଅଟନ୍ତି । ଓଡ଼ିଶାର ଅଧିକାଂଶ ଅଧିବାସୀ ଏହାଙ୍କ ପ୍ରବର୍ତ୍ତିତ ଧର୍ମରେ ଦୀକ୍ଷିତ, ଏହି ସମ୍ବନ୍ଧବଶତଃ ଓଡ଼ିଆ ଭାଷା ଏବଂ ଓଡ଼ିଆ ସାହିତ୍ୟ ଉପରେ ବଙ୍ଗଭାଷାର ପ୍ରଭାବ ବିଶେଷରୂପେ ପରିଲକ୍ଷିତ ହୁଏ । ※ ※ ※ ※

ଏଣା ଭାଷା ଓ ସାହିତ୍ୟ ନାହିଁକ ଓଡ଼ିଶାର ଅସ୍ଥି ମଜ୍ଜାରେ ପ୍ରେମ ଭକ୍ତି ମିଶିଯାଇଅଛି । ଯେଉଁଠାରେ ନାମ ସଙ୍କୀର୍ତ୍ତନ ନ ହୁଏ ଏପରି

ଗୀ ଓଡ଼ିଶାରେ ନାହିଁ ବୋଇଲେ ଚଳେ । ପୁଣି ମାଳ ତିଲକ ଛଡ଼ା କେତେଜଣ ହିନ୍ଦୁ ଓଡ଼ିଶାରେ ଅଛନ୍ତି ? ସ୍ୱୀକାର କରୁଁ ଅଧିକାଂଶ ଶିକ୍ଷିତାଭିମାନୀ ଜଣକେତେ ଅପରିଣାମଦର୍ଶୀ ଯୁବକ ତିଲକ କରନ୍ତି ନାହିଁ ସତ୍ୟ କିନ୍ତୁ ସେମାନେ କୁଳଧର୍ମାନୁସାରେ ବିଷ୍ଣୁମନ୍ତ୍ରରେ ଦୀକ୍ଷିତ । ଶ୍ରୀମଦ୍ଭାଗବତ ପାଠ, ନାମ ଭଜନ, ନାମ ସଙ୍କୀର୍ତ୍ତନ ଓଡ଼ିଶାର କେଉଁ-ଠାରେ ନାହିଁ ? ଓଡ଼ିଶାର ବ୍ରାହ୍ମଣେତର ହିନ୍ଦୁମାନଙ୍କ ମଧ୍ୟରେ କେତେଜଣ ବିଷ୍ଣୁମନ୍ତ୍ର ଛଡ଼ା ଅନ୍ୟ ମନ୍ତ୍ରରେ ଦୀକ୍ଷିତ ? ବ୍ରାହ୍ମଣମାନେ ଯେ ବୈଷ୍ଣବଧର୍ମାବଲମ୍ବୀ ନୁହନ୍ତି ଏମନ୍ତ ନୁହେଁ ଏମାନେ ପଞ୍ଚୋପାସକ, ସବୁ ଦେଶୀୟ ବ୍ରାହ୍ମଣମାନେ ତଦ୍ରୂପ ଅଟନ୍ତି । ଏପରସ୍ଥଳେ "ଓଡ଼ିଶାର ବ୍ରାହ୍ମଣମାନେ ମହାରାଷ୍ଟ୍ରୀୟ ବ୍ରାହ୍ମଣମାନଙ୍କ ପରି ଶୈବ ଶାକ୍ତ ଅଟନ୍ତି" ଏ ଯୁକ୍ତିର ଗୁରୁତ୍ୱ କଅଣ ? ବଙ୍ଗାଳ ବ୍ରାହ୍ମଣମାନେ କି ଶୈବ ଶାକ୍ତ ନୁହନ୍ତି ? ବରଂ ଓଡ଼ିଆ ଓ ବଙ୍ଗାଳ ବ୍ରାହ୍ମଣମାନଙ୍କ ମଧ୍ୟରେ ଯେପରି ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କର ଶିଷ୍ୟ ସଂଖ୍ୟା ଅଧିକ, ଅନ୍ୟ ପ୍ରଦେଶର ବ୍ରାହ୍ମଣମାନଙ୍କ ମଧ୍ୟରେ ସେପରି ନାହିଁ । ସଂକ୍ଷେପରେ କହିବାକୁ ଗଲେ ମହାପ୍ରଭୁଙ୍କ ପ୍ରବର୍ତ୍ତିତ ଧର୍ମ ସମ୍ବନ୍ଧରେ ଓଡ଼ିଆ ବଙ୍ଗାଳ ଏକ ଜାତି ବୋଇଲେ ଅତ୍ୟୁକ୍ତି ହୁଏ ନାହିଁ । ଏକତା ସମ୍ପାଦକ ପକ୍ଷେ ଶ୍ରୀ ମହା-ପ୍ରସାଦ ଓ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ପ୍ରବର୍ତ୍ତିତ ପରମାର୍ଥ ଧର୍ମ ଯେଉଁ-ଦୂର କୃତକାର୍ଯ୍ୟ ହୋଇଅଛି ଭାରତରେ ଅନ୍ୟ କୌଣସି ବିଷୟ ଏପରି କୃତକାର୍ଯ୍ୟ ହେବାର ଲକ୍ଷିତ ହୁଏ ନାହିଁ । କଂଗ୍ରେସ ବୋଲ, କନଫରେନ୍ସ ବୋଲ ଭିନ୍ନ ଜାତିର ଲୋକଙ୍କୁ ଏକସଙ୍ଗେ ଏକ ପଙ୍କ୍ତିରେ ବସି ଅନ୍ନ ଭୋଜନ କରାଇବାର କ୍ଷମତା କାହାର ନାହିଁ । କଥାରେ କହନ୍ତି "ବାର ଜାତି ତେର ଗୋଟି ବୈଷ୍ଣବ ହେଲେ ସବୁ ଗୋଟି" । ମହାପ୍ରଭୁ ମୁସଲମାନଙ୍କୁ ମଧ୍ୟ ସସ୍ନେହେ ସ୍ୱଧର୍ମରେ ଦୀକ୍ଷିତ କରି ଗ୍ରହଣ କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ଏକତା ହେତୁଆନ୍ଦୋଳର ଏକମାତ୍ର ଉପାୟ ବୋଲି ଯେଉଁମାନେ ମତେ

ବିରନ୍ତି ସେମାନଙ୍କର ଉଚିତ ଯେ ସହିଁରେ ପ୍ରଶସ୍ତ ଗୌରାଙ୍ଗ ଧର୍ମର ପ୍ରସର ବୃଦ୍ଧି ହୁଏ ତାହା କରନ୍ତୁ, ନତୁବା "ଷିରନିଲାକ ପ୍ରାୟ" ବାକ୍ୟ ମିଳନ କେବଳ ବାତୁଳତା । ଏବେ ପାଠକେ ଦେଖନ୍ତୁ ବଙ୍ଗଳା ସଙ୍ଗେ ଆମ୍ଭମାନଙ୍କର ଏପରି ହୃଦୟଗତ ମେଲ ଆମ୍ଭମାନଙ୍କର ଭାଙ୍ଗି-ବା ଉଚିତ କି ? ଏବେ ମଧ୍ୟପ୍ରଦେଶର ଧର୍ମ ସମ୍ବନ୍ଧେ ଅତି ସଂକ୍ଷେ-ପରେ ଦୁଇ ଏକ କଥା ଉଲ୍ଲେଖ କରଯାଉଅଛି । ସେ ପ୍ରଦେଶରେ ଅଧିବାସିମାନଙ୍କ ମଧ୍ୟରେ ଶତକଡ଼ା ୭୫.୩୬ ହିନ୍ଦୁ ଅବଶିଷ୍ଟ ପ୍ରାୟ ସମସ୍ତେ ଆଦିମନିବାସୀ ଭିଲ ଗଣ୍ଡ ପ୍ରଭୃତି ଜାତି ଅଟନ୍ତି । ହିନ୍ଦୁମାନଙ୍କ ମଧ୍ୟରେ ସୁଦ୍ଧା ଅନେକ ଆଦିମନିବାସିମାନଙ୍କର ଧର୍ମ ଭାବ କେତେକାଂଶରେ ଅଧିପତ୍ୟ ସ୍ଥାପିତ ଅଛି । ମଧ୍ୟପ୍ରଦେଶର ଧର୍ମ ସମ୍ପ୍ରଦାୟ ମଧ୍ୟରେ ସାତନାମୀ; କବୀରପନ୍ଥୀ, କୁମ୍ଭିପଟିଆ, ନାନକପନ୍ଥୀ, ଶିବପନ୍ଥୀ, ଧାମୀ ପ୍ରଭୃତିର ସଙ୍ଖ୍ୟା ଅଳ୍ପ ନୁହେ । ସୁତରାଂ ଧର୍ମ ସମ୍ବନ୍ଧରେ ମଧ୍ୟପ୍ର-ଦେଶ ଓ ଓଡ଼ିଶାର ମେଲ କେତେଦୂର ତାହା ପାଠକେ ଭଲ ଦେଖନ୍ତୁ ।

ପଞ୍ଚମ ଯୁକ୍ତି ଆଚାର ଓ ବ୍ୟବହାର ।— ଏ ସମ୍ବନ୍ଧରେ ଲେଖକ କହନ୍ତି କି ଓଡ଼ିଆମାନଙ୍କର "ସାମାଜିକ ରୀତିନୀତି ଏବଂ ଆଚାର ବ୍ୟବ-ହାରରେ କିଛି ବିଶେଷ ପରିବର୍ତ୍ତନ ଘଟିବା ସହଜ ନୁହେ କି ବାଞ୍ଛ-ନୀୟ ନୁହେ" । ଏକପ୍ରକାର ହଠଅଲୋକେ ଅଛନ୍ତି ସେମାନେ ଅପ-ଣାର ହଠ ରଖିବାପାଇଁ ଯାହା କହି ତାହା କହିପାରନ୍ତି ଓ ଯାହା ଇଚ୍ଛା ତାହା କହିପାରନ୍ତି । କେହିକୁଥା ଯେଉଁଥିରେ ସେମାନଙ୍କର ଜ୍ଞାନା-ଜ୍ଞାନ ରହେ ନାହିଁ । ଲେଖକ ବୋଧ ହୁଏ ସେହି ଶ୍ରେଣୀର ଲୋକ । ଭଲ ଲେଖକ ! ଆପଣ ମୁଣ୍ଡରେ ହାତ ଦିଅନ୍ତୁ ଦେଖି କହନ୍ତୁ ବଙ୍ଗଳା ସଙ୍ଗେ ମିଶି ଆପଣଙ୍କର ନିଜର ଜାତି-ମାନଙ୍କର କେତେ ପରିବର୍ତ୍ତନ ହୋଇଅଛି କି ନା ? ଆଉ ତୁମ୍ଭେ ଯେ କହୁଅଛ କି "ପରିବର୍ତ୍ତନ ବାଞ୍ଛନୀୟ ନୁହେ" ତୁମ୍ଭର ଏ କଥାନୁସାରେ

ଚଳନ୍ତି ପୁଣି ମୁଣ୍ଡର ଅର୍ଦ୍ଧଚ୍ଛେଦନରେ (ଚୁଟିରେ) ଘୃତ ଲଗାଇ ନାକ-ଟସ୍ତ ଲୋକଙ୍କ ଅସହ୍ୟ ଦୁର୍ଗନ୍ଧରେ ଅପ୍ୟାୟିତ କରିବାକୁ ଦେବ କି ? ଆପଣା ୨ ଜନନୀ, ଭଗିନୀ, ଭାର୍ଯ୍ୟା, କନ୍ୟା ପ୍ରଭୃତିଙ୍କୁ ସହର ମଧ୍ୟରେ ଆପଣା ନିକଟରେ ନ ରଖି ମୋଫସଲରେ ଥୋଇ ଆସି ପାରିବାରିକ ସୁନିର୍ମଳ ସୁଖରୁ ବଞ୍ଚିତ ହୋଇ ନରକରେ ବୁଡ଼ି ଧନ ପ୍ରାଣରେ ମାରି ପଡ଼ିବାକୁ ଦେବ ନାହିଁ କି ? ହା ବ୍ରହ୍ମାନନ୍ଦ ! ହା ନନ୍ଦକିଶୋର ! ତୁମ୍ଭେମାନେ ଏତେବେଳେ କେଉଁଆଡ଼େ ଗଲ ! ଆସି ଦେଖ ତୁମ୍ଭ-ମାନଙ୍କର ସଯତ୍ନ ପ୍ରବର୍ତ୍ତିତ ସମାଜ ସଂଶୋଧନର ପଥରେ ଆଜି କାନ-କୋଳକଣ୍ଟା ପଡ଼ୁଅଛି; ସ୍ୱର୍ଗରାଜ୍ୟରେ ଥାଇ ଖର ନିଶ୍ୱାସ ପବନରେ ଏ ଆବର୍ଜନା ଗୁଡ଼ାକୁ ଉଡ଼ାଇ ନ ଦେଲେ ଆଉ ରକ୍ଷା ନାହିଁ । କେତେ କାଳ କାନ୍ଦି ୨ ଦୀନା କ୍ଷୀଣା ଓଡ଼ିଶା ଜନନୀ ଏତେଦିନେ ଦଶଜଣରେ ଜଣେ ହେବାପାଇଁ ଟିକିଏ ମୁଣ୍ଡ ଟେକୁଅଛନ୍ତି, ଏ ସମୟରେ ଏ ଭୂତ ଗୁଡ଼ାକ ପୁଣି ତାଙ୍କ ବେକରେ ଚଢ଼ି ତାଙ୍କର ମସ୍ତକକୁ ମାଡ଼ିଦେବାକୁ ବସିଅଛନ୍ତି, ଏମାନଙ୍କ ହାତରୁ ମାକୁ ଶୀଘ୍ର ରକ୍ଷା କର, ଏ ଭୂତମା-ନଙ୍କର ଗଳାମୋଡ଼ି ନ ହେଲେ ଅଚିରେ କଣ୍ଟକ ବୃକ୍ଷରେ ଦେଶ ପୂରି ଯିବ ।

ପାଠକେ ! ବର୍ତ୍ତମାନ ଦେଖାଯାଉ ଓଡ଼ିଆମାନଙ୍କର ରୀତିନୀତି ଆଚାର ବ୍ୟବହାର ବଙ୍ଗାଳୀମାନଙ୍କ ସଙ୍ଗେ ଅଧିକ ମେଳେ କି ମଧ୍ୟପ୍ରଦେଶ ବାସୀଙ୍କ ସଙ୍ଗେ ବେଶି ମେଳେ ।

ଓଡ଼ିଆମାନେ ବଙ୍ଗାଳୀମାନଙ୍କ ପ୍ରାୟ, ମତ୍ସ୍ୟଭୋଜୀ ମହାରାଷ୍ଟ୍ରୀୟ ଓ ହିନ୍ଦୁସ୍ଥାନୀମାନେ ମତ୍ସ୍ୟଭୋଜୀମାନଙ୍କୁ ବଡ଼ ଘୃଣା କରନ୍ତି । ମଧ୍ୟ ପ୍ରଦେଶ ସଙ୍ଗେ ମିଶି ଆମ୍ଭେମାନେ କି ହାଡ଼ି ପାଣ ପରି ଘୃଣିତ ହେବା? ବଙ୍ଗାଳୀ ଓ ଓଡ଼ିଆମାନେ ଉଷୁନା ଚାଉଳର ଭାତ ଖାନ୍ତି, ମଧ୍ୟପ୍ରଦେ-ଶୀୟ ଲୋକେ ଉଷୁନାଚାଉଳର ଭାତକୁ " ଝୁଟା " ବୋଲି କହନ୍ତି ବଙ୍ଗାଳୀ ଓ ଓଡ଼ିଆମାନେ ପ୍ରଚୁର ତେଲ ଲଗାଇ ସ୍ନାନ କରନ୍ତି,

ମର୍ହଟ୍ଟା ଓ ହିନ୍ଦୁସ୍ଥାନୀମାନେ ତେଲ ଲଗାନ୍ତି ନାହିଁ କି ପ୍ରତିଦିନ ସ୍ନାନ କରନ୍ତି ନାହିଁ । କେତେକ ଛତିଶଗଡ଼ ଲୋକେ ଝାଡ଼ା ଫେରି ଜଳଶୌଚ ହୁଅନ୍ତି ନାହିଁ । ଆମ୍ଭମାନଙ୍କର ପରିଚ୍ଛଦ ବଙ୍ଗାଳମାନଙ୍କ ସଙ୍ଗେ ଅଧି-କାଂଶରେ ( ଏଣିକି ସମ୍ପୂର୍ଣ୍ଣ ରୂପେ ) ମିଳେ, ହିନ୍ଦୁସ୍ଥାନୀଅଙ୍କ ସଙ୍ଗେ ଆଦୌ ମିଳେ ନାହିଁ । ( ଲେଖକ ଜାଣେ ଯାହା କରନ୍ତୁ ନାହିଁକି; ତାଙ୍କଘରେ ସ୍ତ୍ରୀଲୋକମାନେ ଘାଗରି ପିନ୍ଧିବାକୁ କଦାପି ସମ୍ମତ ହେବେ ନାହିଁ ) । ଆମ୍ଭେମାନେ ବଙ୍ଗାଳମାନଙ୍କ ଅନୁକରଣରେ ମୁଣ୍ଡର ବାଳ କଟାଇ ଅଛୁ । ମର୍ହଟ୍ଟାମାନଙ୍କ ସଙ୍ଗେ ମିଶିଲେ ପୁଣି ଚୁଟି ରଖିବାକୁ ହେବ ନାହିଁତ ? ( ଲେଖକ ଟିକିଏ ଆପଣା ମୁଣ୍ଡ ଦର୍ପଣ ଦେଖିବେ କି ?) । ଆମ୍ଭମାନଙ୍କର ବିବାହ ଆଦି କ୍ରିୟା କଳାପ ବଙ୍ଗାଳ ମାନଙ୍କ ସଙ୍ଗେ ଅନେକ ମିଳେ କିନ୍ତୁ ମର୍ହଟ୍ଟାମାନଙ୍କ ସଙ୍ଗେ ତାହା ମିଳେ ନାହିଁ । ଲେଖକଙ୍କ ମତରେ ଆମ୍ଭମାନଙ୍କର ଆଚାର ବ୍ୟବହାରରେ ପରିବର୍ତ୍ତନ ବାଞ୍ଛନୀୟ ନୁହେ । ଏମନ୍ତ ବଡ଼ ସଙ୍କୀର୍ଣ୍ଣ, ତାଙ୍କ ଉପଦେଶ ମତେ ଚଳିଲେ ଉନ୍ନତିର ପଥ ଏକାବେଳକେ ବନ୍ଦ ହୋଇଯିବ । ମନେ କର ଆମ୍ଭମାନଙ୍କର ପ୍ରାଚୀନ ହିନ୍ଦୁ ନୀତି ଓ ଆଚାର ବ୍ୟବହାର ଅନୁସାରେ ବ୍ରାହ୍ମଣତ ଦୂରର କଥା ଶୂଦ୍ରର ମଧ୍ୟ ଅସ୍ଥି ଛୁଇଁବା ଅନୁଚିତ ଯେବେ ଏତେବେଳେ ଆମ୍ଭେମାନେ ସେହି ଅନୁସାରେ ଚଳନ୍ତି ତେବେ ଅଚିରେ କଟକର ଡାକ୍ତରି ସ୍କୁଲକୁ ଉଠାଇ ଦେବାର ଉଚିତ କାରଣ ସେଠାରେ ବ୍ରାହ୍ମଣ ସନ୍ତାନକୁ ସୁଦ୍ଧା ହାଡର ପଞ୍ଜ୍ର ମୃତଶରୀର ଘାଣ୍ଟି-ବାକୁ ହୁଏ ପୁଣି ତାହା କରି ପୈତା ପରିବର୍ତ୍ତନ ପୂର୍ବକ ଗାୟତ୍ରୀ ଜପ କରିବା ଦୂରେ ଥାଉ ସ୍ନାନସୁଦ୍ଧା କରିବାର ସମୟ ଥାଏ ନାହିଁ । ଏମନ୍ତସ୍ଥଳେ ପୁରାତନ ଆଚାର ବ୍ୟବହାର ଉପରେ ବଜାଏ ରଖି ଚଳିବାକୁ ହେବ ତାହା ଲେଖକ ଦେଖାଇ ଦେଇ ପାରିବେ କି ? ଆହୁରି ଦେଖ ପୂର୍ବେ ବ୍ରାହ୍ମଣ ସକଳ ବର୍ଣ୍ଣର ନମସ୍କାରଣୀୟ ଥିଲେ, ରାଜାମାନେ ମଧ୍ୟ ବ୍ରାହ୍ମଣମାନଙ୍କୁ ଦେଖିଲା ମାତ୍ରେ ଆସନରୁ ଉଠି

ପ୍ରଣାମପୂର୍ବକ ଅଗ୍ରେ ବ୍ରାହ୍ମଣମାନଙ୍କୁ ଆସନରେ ବସାଇ ପଛେ ଅର୍ଘ୍ୟ ଦେଉଥିଲେ, ଏବେ ସାହେବ ଦ୍ଵାରମର ବ୍ରାହ୍ମଣ ଅମଲା ଦାରମଙ୍କ ନିକଟରେ ପଟ୍ଟଶାଳା ମାଷ୍ଟରେ ଆଗନ୍ତୁ " ଗୁଡମରଣିଂ" କରୁଅଛନ୍ତି । ଏ ପ୍ରଥାକୁ ଲେଖକ ଉଠାଇଦେଇ ପାରିବେ କି ? ପୂର୍ବେ ବ୍ୟବସାୟୀ ଜାତିଗଣ ଥିଲା, କଉଣ ପ୍ରଥ୍ମ ହେଲ ବଦଳେ ଜନକାମୁ ଓ ପଣ୍ଡିତ ହେଉଥିଲେ ଏବେ ବ୍ରାହ୍ମଣ ମଧ୍ୟ ଅମ୍ଳାନ ବଦନରେ ଯୋତା ବିକ୍ରି କରିବାକୁ କୁଣ୍ଠିତ ନୁହନ୍ତି । " ପେଟ ପୋଷ ନାହିଁ ଦୋଷ" ଏ ମହାବାକ୍ୟକୁ ଛାଡିଲେ ଏକାଳରେ ମୁହୂର୍ତ୍ତେ ଚଳିବାର କଠିନ । ପୂର୍ବକାଳରେ ବ୍ରାହ୍ମଣମାନଙ୍କର ବୃତ୍ତି ଥିଲା ଯଜନ, ଯାଜନ, ଅଧ୍ୟୟନ ଓ ଅଧ୍ୟାପନା, ଏବେ ସେମାନେ ସେହି ବୃତ୍ତିକୁ ଆଶ୍ରା କଲେ ଖାଇବାକୁ ପାଇବେ ନାହିଁ ଲୋକଙ୍କଠାରୁ ମଧ୍ୟ ସେସେଇଯାପୁଆର ମିଳିବ ନାହିଁ । କାଳର ସ୍ରୋତରେ ପରିବର୍ତ୍ତନ ଅବଶ୍ୟମ୍ଭାବୀ, ତହିଁରେ ତୁମ୍ଭେ ଅମ୍ଭେ ବାଧା ଦେଇ ପାରିବା ନାହିଁ, ଦେବାକୁ ଚେଷ୍ଟା କଲେ ଖଟଖଟ ମାଡ ଖାଇ ହେବ । ଓଡ଼ିଆମାନେ ରକ୍ଷଣଶୀଳ ସତ୍ୟ କିନ୍ତୁ ସଂସ୍କାର ବିରୋଧୀ ନୁହନ୍ତି । ସେ ଦିନ ପାତ୍ର ମୃଙ୍ଗସାହେବ ସମ୍ମିଳନୀରେ ଯେ ଉପଦେଶ ଦେଲେ " ତୁମ୍ଭମାନଙ୍କର ରୀତି ନୀତି ଆଚାର ବ୍ୟବହାର ମାନଙ୍କର ସଂସ୍କାର କର" ତହିଁର ଗଭୀରତା ଲେଖକ ମାପି ଦେଖି ଅଛନ୍ତି କି ? ସେଦିନ ସମ୍ମିଳନୀରେ ଧାର୍ଯ୍ୟ ହେଲା କି " ଶିଳ୍ପାଦଶିକ୍ଷା କରିବା ସକାଶେ ଉପଯୁକ୍ତ ଯୁବକମାନଙ୍କୁ ବିଦେଶକୁ ପଠାଇବା ପାଇଁ ଯତ୍ନ କରାଯିବ" । ବର୍ତ୍ତମାନ ମନେ କର ଜାତ ଦ୍ରବ୍ୟ ବିଦେଶରୁ ଆସି ଏଠାରେ ବିକ୍ରୀ ହୋଇ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କା ବିଦେଶକୁ ଚାଲି ଯାଉଅଛି । ଯେବେ ଏଦେଶରେ ତାଉର କାରଖାନା ହୁଏ ତେବେ ଦେଶର ଟଙ୍କା ଦେଶରେ ରହିଯିବ । କାଚ ପ୍ରସ୍ତୁତ କରିବାର କାର୍ଯ୍ୟ ଶିଖିବା ପାଇଁକି ଜଣକେତେ ଯୋଗ୍ୟ ଯୁବକଙ୍କୁ ଜାପାନ ପଠାଇବାର ଅତି ପ୍ରୟୋଜନ, କିନ୍ତୁ ପ୍ରାଚୀନପ୍ରଥା ଅନୁସାରେ ବିଦେଶକୁ ଗଲେ ଜାତିଯିବ,

ଅତଏବ ସେ ଅନୁସାରେ ଚଳଲେ ଏ ଦେଶରେ କାଠ କାରଖାନାର ସମସ୍ତ ସୁବିଧା ଥିଲେହେଁ କେବଳ ଏହି ବାଧା ଯୋଗୁଁ ତାହା ହୋଇ ପାରିବ ନାହିଁ । ବଙ୍ଗାଳୀମାନଙ୍କ ସଙ୍ଗେ ରହିବାରୁ ଆମ୍ଭମାନଙ୍କର ଯେବେ କିଛି ପରିବର୍ତ୍ତନ ହୋଇଥାଏ ତେବେ ତାହା ଭଲ ଭିନ୍ନ ମନ୍ଦ ନୁହେ, ଏହା ବଙ୍ଗାଳ ନାହିଁବ ଉନ୍ନତ ଇଂରାଜ ଜାତି ସଙ୍ଗେ ସ୍ପର୍ଶାସ୍ପର୍ଶି ହେବାରୁ ଆମ୍ଭମାନଙ୍କର ଅନେକ କୁସଂସ୍କାର ଅପନୀତ ହୋଇଅଛି ଓ ମଧ ଧୀରେ୨ ହେଉଅଛି । ହେଉ ତାହା ହେବା ବାଞ୍ଛନୀୟ କେବଳ ପରିବର୍ତ୍ତନଟି ସୁପରିବର୍ତ୍ତନ ହେଲେ ରକ୍ଷା । "ସୁ" ସଙ୍ଗେ "କୁ" ମଧ ଆମ୍ଭମାନଙ୍କ ସମାଜରେ ପ୍ରବେଶ ହେଉ-ଅଛି ସତ୍ୟ କିନ୍ତୁ ଏ "କୁ" ମାନଙ୍କୁ ବାଛି ପକାଇବାର ଉଚିତ । ଆମ୍ଭମାନଙ୍କର ସମାଜର "ସୁ" କୁ ରଖି "କୁ" କୁ ଛାଡିବା ଓ ବିଦେ-ଶୀୟମାନଙ୍କଠାରୁ "କୁ" ଛାଡି "ସୁ" କୁ ଆଣି ଆମ୍ଭମାନଙ୍କର ସାମା-ଜିକ ଅଙ୍ଗର ବ୍ୟବହାର ସଙ୍ଗେ ମିଶାଇବାର ନାମ "ସମାଜସଂସ୍କାର" ଏହାଇ ପାଦ୍ରି ସ୍ୱୟଂ ସାହେବଙ୍କର ଉପଦେଶର ଲକ୍ଷ୍ୟ । ପାଦ୍ରି କହନ୍ତି ହାହାନ୍ତ ଯେ ଇଂରାଜମାନଙ୍କଠାରୁ ଓଡିଆମାନଙ୍କ ଉପରେ ସୁରାପାନ ଦୋଷ ଉପକ୍ରମ କରୁ । ଏହିପରି ସଂସ୍କାରହିଁ ଉତ୍କଳ ସମ୍ମିଳନୀର ମୋକ୍ଷ ଉଦ୍ଦେଶ୍ୟ ଏହାଇ ଦେଶୋନ୍ନତିର ଉପାୟ । ସେହିକ ସମ୍ମିଳନୀ ସଭାରେ ଶ୍ରୀଯୁକ୍ତ ବାବୁ ବିଶ୍ୱନାଥ କର ଏହାର ଆଭାସ ଦେଇଥିଲେ, ଶ୍ରୀଯୁକ୍ତ ବାବୁ ମଧୁସୂଦନ ଦାସଙ୍କର ବକ୍ତୃତାରେ ମଧ ଏହି କଥା ପ୍ରଚ୍ଛନ୍ନ ଭାବରେ ନିହିତ ଥିଲା, ପୁଣି ସଭାପତିଙ୍କର ବକ୍ତୃତାରେ ଅସ୍ଥି ମଜ୍ଜା ମଧ୍ୟରେ ଏହି କଥା । ଲେଖକଙ୍କର ଉପଦେଶମତେ ଯେବେ ସମସ୍ତେ କଠୋର ରକ୍ଷଣଶୀଳ ହୁଅନ୍ତି ତେବେ ଏ ସଂସ୍କାର ହେବାର ସମ୍ଭବ କି ? ଲେଖକ କହନ୍ତି "ମହାରାଷ୍ଟ୍ରୀୟମାନଙ୍କ ଜାତୀୟ ଭାବରେ ଉନ୍ନତିସାଧନ ଓଡିଆମାନଙ୍କ ପକ୍ଷେ ହିତକର ଏବଂ ସୁଖକର ହୋଇ ପାରେ । "ପାରେ" ଏହି ଶବ୍ଦ ପ୍ରୟୋଗରୁ ଜଣା ପଡୁଅଛି ଏ ବିଷୟରେ ତାଙ୍କର

ମତ ନିଶ୍ଚିତ ନୁହେ । ପୂର୍ବେ କହୁଅଛୁଁ ନିଶ୍ଚିତକୁ ଛାଡ଼ି ଅନିଶ୍ଚିତ କାଳ୍ପନିକ ବସ୍ତୁର ଅନୁବର୍ତ୍ତୀ ହେବା ବାତୁଳତା । ପ୍ରକୃତ "ହିତକର" ଓ "ସୁଖକର" ହେବ କିପରି ? ମର୍ଦ୍ଦନ୍ତୁମାନେତ ଅମ୍ଭେ ମାଛୁଆମାନଙ୍କୁ ହାଣ୍ଡି ପାଣି ପରି ଘୃଣା କରନ୍ତି ସେମାନଙ୍କ ସ୍ୱାର୍ଥରେ ଆମ୍ଭମାନଙ୍କର ଜନ୍ମଗତ "ହିତକର" ଏବଂ "ସୁଖକର" ହେବ କିପରି ? ଏପରି ଲେଖକ ବୋଧହୁଏ ବ୍ରାହ୍ମଣମାନଙ୍କୁ ଡରନ୍ତି ତେଣୁ ତାଙ୍କର ଫୁସୁଲାଇତ ପ୍ରସ୍ତାବମାନଙ୍କରେ ଓଡ଼ିଶାବାସୀ ବ୍ରାହ୍ମଣମାନଙ୍କର ବଙ୍ଗଳାରେ ବୈବାହିକ ସମ୍ବନ୍ଧ ବଜାଏ ରହିପାରିବା ପକ୍ଷେ ଆଶ୍ୱାସନା ଦେଇଅଛନ୍ତି । ମାତ୍ର ଓଡ଼ିଶାରେ ଯେଉଁ ଅନେକ କେସ ବଙ୍ଗାଳି ଅଛନ୍ତି (ଏମାନଙ୍କର ସଂଖ୍ୟା ବ୍ରାହ୍ମଣମାନଙ୍କଠାରୁ ଅନେକ ଅଧିକ) ସେମାନଙ୍କୁ ପଦେ "ମା ଭୈଃ" ବାକ୍ୟ କହି ନାହାନ୍ତି । ଫଳତଃ ଦେଶ ଯେ କୌଣସି ଶାସନାଧୀନରେ ରହୁ ନା କାହିଁକି ଏ ପକ୍ଷେ କୌଣସି ଭୟ ନାହିଁ । ଏବେ ଦେଖାଯାଉଅଛି ଯେ ସ୍ୱାର୍ଥ ମାତ୍ର ଆଶ୍ରୟ ବ୍ୟବହାର ଯେମନ ଲେଖକ ଯେ ଅସାର ଯୁକ୍ତିମାନ ଦେଖାଇଅଛନ୍ତି ସେସମସ୍ତ ମଧ୍ୟ ଠିକ୍ ନାହିଁ ।

ଷଷ୍ଠ ଯୁକ୍ତି ଶିକ୍ଷା—ଲେଖକ କହନ୍ତି ବଙ୍ଗଳାରେ କଲେଜ ୪୫ ଓଡ଼ିଶାରେ ୧ ମଧ୍ୟପ୍ରଦେଶରେ ୩ । ୧୯୦୧-୧୯୦୨ ରେ ବି, ଏ ପାସ କରିଥିଲେ ବଙ୍ଗଳାରୁ ୪୦୯ ଓଡ଼ିଶାରୁ ୭ ମଧ୍ୟପ୍ରଦେଶରୁ ୩୭; ଅତଏବ ତାଙ୍କ ବିବେଚନାରେ ବଙ୍ଗାଳିପିଲାମାନଙ୍କର ଅନେକ ସୁବିଧା ସୁଯୋଗ ଥିବାରୁ ଓଡ଼ିଆ ପିଲାମାନେ ତାଙ୍କ ସଙ୍ଗେ ପ୍ରତିଯୋଗିତାରେ ପାରୁ ନାହାନ୍ତି । ଓଡ଼ିଶା ଯେବେ ମଧ୍ୟପ୍ରଦେଶ ସଙ୍ଗେ ଏକ ଶାସନାଧୀନରେ ରହେ ତେବେ ( ସେ ପ୍ରଦେଶବାସୀ ଛାତ୍ରମାନଙ୍କର ସୁଯୋଗ ସୁବିଧା ଅଳ୍ପ ଥିବାରୁ ) ଓଡ଼ିଆ ଗ୍ରାଜୁଏଟ ( ଉପାଧିଧାରୀ ) ଙ୍କ ସଂଖ୍ୟା ହୁ ହୁ ବଢ଼ିଯିବ । ଏବେ ଦେଖାଯାଉ ଏ ଯୁକ୍ତିରେ ସାର କେତେ ଅଛି । ଲେଖକଙ୍କର କଥିତମତେ ବଙ୍ଗଳାର ପ୍ରତି କଲେଜରୁ ୧୯୦୧-

୧୯୦୨ ସାଲରେ ବଙ୍ଗ—୯, ମଧ୍ୟପ୍ରଦେଶର କଲେଜ ପିଲାଙ୍କ—୯୨ ଓଡ଼ିଶାର ୨—୭ ଜଣ ବାଗହାର, ବି, ଏ, ପାସ କରିଥିଲେ । ସଂଖ୍ୟା ଉପରେ ଯେବେ ସୁଯୋଗ ସୁବିଧା ବିଷୟ ଅନୁମାନ କରାଯାଏ ତେବେ ଦେଖା ଯାଉଅଛି ବଙ୍ଗଳା ଅପେକ୍ଷା ମଧ୍ୟପ୍ରଦେଶବାସୀ ଛାତ୍ରମାନଙ୍କର ସୁଯୋଗ ସୁବିଧା ଓଡ଼ିଆମାନଙ୍କଠାରୁ ଅନେକ ଅଧିକ ଅଟେ, ସୁତରାଂ ସେମାନଙ୍କ ସଙ୍ଗେ ପ୍ରତିଯୋଗିତାରେ ଜୟୀ ହେବା ଓଡ଼ିଆ ପିଲାଙ୍କ ପକ୍ଷେ ଏହାବେଳକେ ଅସମ୍ଭବ । ଗତ ବିଏଲ୍ ପରୀକ୍ଷାର ଫଳପ୍ରତି ଦୃଷ୍ଟି କଲେ ପାଠକେ ଦେଖିବେ ଯେ ମଧ୍ୟ-ପ୍ରଦେଶରୁ ୧୪ ଜଣ ପାସ କରିଅଛନ୍ତି କିନ୍ତୁ ଓଡ଼ିଶା କପାଳରେ ଖଣ୍ଡପଡ଼ି ନାହିଁ । ସୁତରାଂ ଲେଖକମାନଙ୍କଠାରୁ ମଧ୍ୟପ୍ରଦେଶବାସି ପିଲାମାନଙ୍କ ସଙ୍ଗେ ଓଡ଼ିଆ ଛାତ୍ରମାନଙ୍କର ପ୍ରତିଯୋଗିତା କରିବା ଯେ ସହଜ ବ୍ୟାପାର ଏହା କଦାପି ନୁହେ । କଥାରେ କହନ୍ତି "କ ଦେଖିଲା ଓଡ଼ ଛୁଅଡ଼ା" ଲେଖକ ମଧ୍ୟପ୍ରଦେଶବାସୀ ପିଲା-ମାନଙ୍କର ବୁଦ୍ଧିବୃତ୍ତି ସମ୍ୟକରୂପେ ଦେଖି ନାହାନ୍ତି ତେଣୁ ମନେ କରିଅଛନ୍ତି ସେମାନେ ହୁଆ ମୂର୍ଖ ସୁତରାଂ ଓଡ଼ିଆ ପିଲାଏ ତାଙ୍କୁ ସହଜରେ ବଳିଯିବେ । ଆଉ ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ସୁବିଧା ସୁଯୋଗ ଅଧିକ ହେବାର ଆଶା କିଅଣ ? ତାହା ହେଲେ କିଏ ପରୀକ୍ଷାର ପାଠ୍ୟପୁସ୍ତକମାନ କ କମିଯିବ ? ଏପରି କମିଯିବା କି ବାଞ୍ଛନୀୟ ? ଆଉ ସେ ଯେ କହନ୍ତି ଓଡ଼ିଶାର ଏକମାତ୍ର କଲେଜରୁ ଇଣ୍ଡିୟାନ୍ ସର୍ଭିସର ଜଣେ ପ୍ରିନ୍ସିପାଲ ଏ ପର୍ଯ୍ୟନ୍ତ ଦିଆଯାଉ ନାହିଁ । ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ସେଣି କି ଦିଆଯିବ ? ଆଉ ଏପରି ଜଣେ ପ୍ରିନ୍ସିପାଲର ଅଭାବ ଯୋଗୁଁ କି ଓଡ଼ିଆ ପିଲାଏ ବି ଏ ପାଶ କରି ପାରୁ ନାହାନ୍ତି ? ପୁଣି ଲେଖକ ଯେ କହନ୍ତି କି "ବଙ୍ଗାଳୀପିଲାଏ ଅଧିକ ଛାତ୍ରବୃତ୍ତି ନେଇଯାଉଅଛନ୍ତି ଓଡ଼ିଆ ପିଲାଏ ପାରୁ ନାହାନ୍ତି" ଏହାତ ପ୍ରତିଯୋଗିତାର ଫଳ, ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ମଧ୍ୟ

ଏହି ଫଳ ହେବ । ଓଡ଼ିଆ ପିଲାମାନଙ୍କର ବୃଦ୍ଧି ପାଇବା ପକ୍ଷେ ଶାସନ ପ୍ରଣାଳୀ ସମ୍ପର୍କୀୟ କୌଣସି ବାଧା ଅଛି କି ? ଫଳକଥା ଯେ ଯୋଗ୍ୟ ହେଲା ସେ ପାଇଲା, ଅମ୍ଭେ ଓଡ଼ିଆମାନେ ଅଯୋଗ୍ୟ-ମୂଳା ସୁତରାଂ ବକ୍ ବକ୍ କରି ଗୃହିଁ ରହିବୁଁ ଏଥିରେ ବଡ଼କଥା କଅଣ ? ଅମ୍ଭମାନଙ୍କର ପିଲାମାନେ ନିତାନ୍ତ ଅଳସୁଆ, ସେମାନଙ୍କର ଆତ୍ମ ନିର୍ଭର ନାହିଁ ଅମ୍ଭେମାନେ ମଧ୍ୟ ଉଚ୍ଚଶିକ୍ଷାର ମର୍ଯ୍ୟାଦା ବୁଝି ପାରୁ ନାହୁଁ, ଅମ୍ଭମାନଙ୍କର ଶିକ୍ଷାର ଉଦ୍ଦେଶ୍ୟ କେବଳ ଚାକିରି, ତେଣେ ଚାକିରିଦ୍ୱାର କ୍ରମେ ବନ୍ଦ ହୋଇ ଆସୁଅଛି ସୁତରାଂ ଉଚ୍ଚ ଶିକ୍ଷା ପକ୍ଷେ ଅମ୍ଭମାନଙ୍କର ମଧ୍ୟ ଉତ୍ସାହ କମି ଆସୁଅଛି । ପୁଣି ଅମ୍ଭେମାନେ ପିଲାମାନଙ୍କୁ ପାଳନ କରିବାକୁ ଜାଣୁ ନାହିଁ ଓ ତାହା ଯେ ଜୀବନର ଗୋଟିଏ ପ୍ରଧାନ କାର୍ଯ୍ୟ ତାହା ଅମ୍ଭେମାନେ ଉପଲବ୍ଧି ପର୍ଯ୍ୟନ୍ତ କରି ପାରୁଁ ନା । ଅମ୍ଭମାନଙ୍କର ସ୍ତ୍ରୀମାନେ ପ୍ରାୟ ସମସ୍ତେ ଅଶିକ୍ଷିତା, ସେ ଯୋଗୁଁ ଇଉରୋପୀୟ ରମଣୀମାନେ ଆପଣା୨ ସନ୍ତାନମାନଙ୍କୁ ଶିଶୁକାଳରୁ ଯେପରି ଶିକ୍ଷା ଦିଅନ୍ତି ଅମ୍ଭମାନଙ୍କ ଦେଶରେ ସେପରି ସମ୍ଭାବନା ନାହିଁ । ବଙ୍ଗାଳୀମାନଙ୍କ ମଧ୍ୟରେ ଅନେକସ୍ଥଳେ ଶିକ୍ଷିତା ନାରୀମାନେ ଆପଣା୨ ପିଲାମାନଙ୍କୁ ଶିକ୍ଷା ଦେଉଥାନ୍ତି । ଅତି ଶୈଶବାବସ୍ଥାରୁ ଯାହା ଶିକ୍ଷା ଦିଆଯାଏ ପୁଣି ସେ ଶିକ୍ଷା ଯେବେ ଜନନୀ ଦିଅନ୍ତି ତେବେ ତାହା ଚିରକାଳ ମନରେ ରହିଯାଏ । କଥାରେ କହନ୍ତି 'ଯାହା ନାହିଁ ବାଳକାଳେ ତାହା ନାହିଁ କାଳେ' । ପୁଣି ଅମ୍ଭମାନଙ୍କର ପିଲାମାନେ ଅବାଧ୍ୟ, ଅଳସୁଆ ଓ ପରଶ୍ରମକାତର, ଏହି ସବୁ ଓ ଅନ୍ୟାନ୍ୟ କାରଣରୁ ଅମ୍ଭମାନଙ୍କର ବାଳକମାନେ ଶିକ୍ଷା ବିଷୟରେ ବଙ୍ଗାଳୀ ପ୍ରଭୃତି ଜାତୀୟ ପିଲାମାନଙ୍କ ପଛରେ ପଡ଼ି ରହି ଅଛନ୍ତି, ନତୁବା ଶାସନ ପ୍ରଣାଳୀ ତହିଁର କାରଣ ନୁହେ । ଲେଖକ ଅନ୍ୟତ୍ର ମଧ୍ୟ କହି ଅଛନ୍ତି ଯେ "ବଙ୍ଗଳା ସହିତ କହୁ ଓଡ଼ିଶା ର ଅନୁପାତରେ ଶିକ୍ଷା ସମ୍ବନ୍ଧେ ଗବର୍ଣ୍ଣମେଣ୍ଟଙ୍କ ସାହାଯ୍ୟ

ଯାଉଅଛୁ ଏବଂ ମଧ୍ୟପ୍ରଦେଶ ସଙ୍ଗେ ଗଲେ କେବେ ପାଇ ପାରେ" ଅମ୍ଭେମାନେ ଅତ୍ୟନ୍ତ ପରମୁଖାପେକ୍ଷୀ ଅମ୍ଭ ନିର୍ଭର ଅମ୍ଭମାନଙ୍କର ଅଦୌ ନାହିଁ, ସକଳ କାର୍ଯ୍ୟରେ ଅମ୍ଭେମାନେ ଭିକ୍ଷା ଝୋଲି ନେଇ ଉପସ୍ଥିତ ହେଉଁ, ଏହିଯୋଗୁଁ ଅମ୍ଭମାନଙ୍କର କିଛି ହେଉ ନାହିଁ। ପରନ୍ତୁ ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ଅମ୍ଭେମାନେ ଯେ କି ନାଧ ଲାଭ କରିବୁ ତାହା ଲେଖକ ଦେଖାଇ ଦେଇ ନାହାନ୍ତି।

୭ମ ବନ୍ଦୋବସ୍ତ—ଲେଖକ କହନ୍ତି ବଙ୍ଗଳାରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳିତ, ଓଡ଼ିଶା ଓ ମଧ୍ୟପ୍ରଦେଶର ବନ୍ଦୋବସ୍ତ ମିଆଦ, ଅତଏବ ଓଡ଼ିଶା ମଧ୍ୟପ୍ରଦେଶ ସଙ୍ଗେ ମିଶିବା ସୁବିଧା ଜନକ। ଏଥିରୁ ଓଡ଼ିଶାର ବନ୍ଦୋବସ୍ତ ଚିରସ୍ଥାୟୀ ନ ହେଲେହେଁ ତହିଁର ମିଆଦ ୩୦ ବର୍ଷ କିନ୍ତୁ ମଧ୍ୟପ୍ରଦେଶର ବନ୍ଦୋବସ୍ତ ଦଶସାଲା। ବନ୍ଦୋବସ୍ତର ହେଙ୍ଗାମା ଯେ କେତେ ବିରକ୍ତି ଜନକ ତାହା ଭୁକ୍ତଭୋଗୀମାନେ ଜାଣନ୍ତି। ପୁଣି ଓଡ଼ିଶା ଅପେକ୍ଷା ମଧ୍ୟପ୍ରଦେଶରେ ଖଜଣାର ଦର ଅଧିକ ଅଥଚ ଭୂମି ତେତେ ଉର୍ବର ନୁହେ ସୁତରାଂ ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ଉକ୍ତ ଦେଶବାସୀ ଓଡ଼ିଶାର ଉଦ୍‌ବୃତ୍ତ ରାଜସ୍ୱର ଫଳଭୋଗୀ ହେବେ। ପୁଣି ମଧ୍ୟପ୍ରଦେଶର ଅନୁପାତରେ ଯେବେ ଓଡ଼ିଶାରେ କର ଧାର୍ଯ୍ୟ ହୁଏ ତାହା ହେଲେ ସର୍ବନାଶ। ଓଡ଼ିଶା ମଧ୍ୟ ସମ୍ପୂର୍ଣ୍ଣରୂପେ ମିଆଦି ବନ୍ଦୋବସ୍ତି ପ୍ରଦେଶ ନୁହେ, ଏଠାରେ ମଧ୍ୟ ଆଳି, କନିକା, କୁଜଙ୍ଗ ପ୍ରଭୃତି ଅନେକ ଚିରସ୍ଥାୟୀ ବନ୍ଦୋବସ୍ତ ମହାଲ ଅଛି। ଗଡ଼ଜାତ ମାନଙ୍କରେତ ବନ୍ଦୋବସ୍ତ ଆଇନ ଆଦୌ ଚଳେ ନାହିଁ। ଲେଖକଙ୍କର କଥିତମତେ ଯେବେ ଚିରସ୍ଥାୟୀ ବନ୍ଦୋବସ୍ତ ମହାଲ ନିବାସୀମାନେ ଧନଧାନ୍ୟର ଅଧିକାରୀ ହୋଇ ଅଧିକତର ସୁଖ ଓ ସୁବିଧା ଭୋଗ କରି ମିଆଦି ବନ୍ଦୋବସ୍ତ ମହାଲ ବାସିମାନଙ୍କଠାରୁ ଅଧିକ ଉନ୍ନତ ହୁଅନ୍ତି ତେବେ ଓଡ଼ିଶାର ଚିରସ୍ଥାୟୀ ବନ୍ଦୋବସ୍ତ ମହାଲମାନଙ୍କରେ ସେପରି ଘଟୁ ନାହିଁ

ନାହିଁ ? ଯାହା ଚକ୍ଷୁରେ ଦେଖାଯାଉଅଛି ତହିଁରେ ବର୍ଣ୍ଣ ନ କରିବାର ଉଚିତ କି ଲେଖକଙ୍କର ସ୍ୱାର୍ଥସିଦ୍ଧି ନିମିତ୍ତ ଲୋକଙ୍କୁ ଭୁଲାଇବା ଅଭିପ୍ରାୟରେ କଥିତ ମିଥ୍ୟା ବାକ୍ୟ ଉପରେ ନିର୍ଭର କରିବା ବିଧେୟ ତାହା ପାଠକ ବିଚାରକରି ଦେଖନ୍ତୁ ।

୮ମ ରେଲପଥ—କୌଣସି ଅନୁନ୍ନତ ପ୍ରଦେଶ କୌଣସି ଉନ୍ନତ ପ୍ରଦେଶ ସଙ୍ଗେ ରେଲଦ୍ୱାରା ଯୁକ୍ତ ହେଲେ ଯେ ଉନ୍ନତିଲାଭ କରିପାରେ ଏହା ଲେଖକ ସ୍ୱୀକାର କରିବାକୁ ଅନିଚ୍ଛୁକ, ଯେଣୁ କଲିକତା ଓ ମାନ୍ଦ୍ରାଜ ସଙ୍ଗେ ରେଲଦ୍ୱାରା ଯୁକ୍ତ ହେବାରେ ଓଡ଼ିଶାର, ତାଙ୍କ ମତରେ, କୌଣସି ଉପକାର ନାହିଁ । ଏ ମହାତ୍ମା ଏତେଦିନ କେଉଁଠାରେ ଲୁଚି ରହିଥିଲେ କେଜାଣି । ଅଳ୍ପଦିନ ତଳେ ଯେତେବେଳେ ବଙ୍ଗଳାର ଲେଫ୍‌ଟେନାଣ୍ଟ ସର୍ ଷ୍ଟୁଆର୍ଟବେଲି ଏ ନଗରକୁ ଶୁଭାଗମନ କରିଥିଲେ ସେତେବେଳେ ଏଠାରୁ ଯେତେ ଅଭିନନ୍ଦନପତ୍ର ତାଙ୍କୁ ପ୍ରଦତ୍ତ ହୋଇଥିଲା ସେ ସମସ୍ତରେ ରେଲୱେ ପାଇଁ ପ୍ରାର୍ଥନା ହୋଇଥିଲା, ପୁଣି ସ୍ଥାନେ ଯେ ତୋରଣମାନ ନିର୍ମିତ ହୋଇଥିଲା ସେମାନଙ୍କ ଉପରେ ସୁଦ୍ଧା "Orissa wants railway" "ଓଡ଼ିଶା ରେଲପ୍ରାର୍ଥୀ" ବୋଲି ଲେଖା ହୋଇଥିଲା । ଲାଟସାହେବ ମହୋଦୟ ଉତ୍କଳ ସଭାର ଅଭିନନ୍ଦନ ପତ୍ରର ଉତ୍ତରରେ ଏ ବିଷୟର ଉଲ୍ଲେଖ କରି ଏହି କଟକ ନଗରର ବାଲି ପଡ଼ିଆରେ ନିର୍ମିତ ଦରବାର ଘରେ କହିଥିଲେ କି ସେ ମଧ୍ୟ ଓଡ଼ିଶାରେ ରେଲବାଟର ଅଭାବ ଉପଲବ୍ଧି କରିଥିଲେ । ସେକାଳରେ ଲେଖକଙ୍କର ଜନ୍ମ ହୋଇଥିଲା କି ନାହିଁ ତାହା ସେ ଜାଣନ୍ତି । ଯେବେ ହୋଇଥାଏ ତେବେ ତାଙ୍କର ଏ ଉଦାର ମତକୁ ସେ ସେକାଳରେ ପ୍ରକାଶ ନ କରି ବଡ଼ ଭୁଲ କରିଅଛନ୍ତି । ଓଡ଼ିଶାର ରାଜଧାନୀ ରେଲଯୋଗେ କଲିକତାର ନିକଟ ହେବାରୁ ଗବର୍ଣ୍ଣମେଣ୍ଟଙ୍କଠାରୁ ଯେ କେଉଁ ଦୃଷ୍ଟି ଓ ସାହାଯ୍ୟ ଲାଭ କରି ପାରିବ

ତାହା ସେ ବୁଝି ପାରୁ ନାହାନ୍ତି । ବୁଝି ନ ପାରିବା କିଛି ନୁହେଁ, ତାହା ଗବର୍ଣ୍ଣମେଣ୍ଟଙ୍କର କାର୍ଯ୍ୟ ଗବର୍ଣ୍ଣମେଣ୍ଟ ତାହା ଭଲ ବୁଝନ୍ତି । ଆମ୍ଭେମାନେ କେବଳ ଦେଖାବରେ ତାଙ୍କୁ କିଛି ବୁଝାଇ ଦେଉଅଛୁଁ । ସବଡିଭିଜନ୍, ଜିଲ୍ଲା ଓ ବିଭାଗୀୟ ହାକିମମାନେ ଯେଉଁ ଯତ୍ନ ଓ ଦୃଷ୍ଟି ପକାଇବା ସକାଶେ ମୋଫସଲ ଭ୍ରମଣ କରନ୍ତି ଏ ସେହି ଦୃଷ୍ଟି ଓ ଯତ୍ନ, ନିକଟ ହେଲେ ଏପରି ଭ୍ରମଣରେ ଅଧିକ ସୁବିଧା ଓ ସମ୍ଭାବନା । ଗବର୍ଣ୍ଣମେଣ୍ଟ କଲିକତାରେ ଥାଇ ମଧ୍ୟ ଓଡ଼ିଶା ଶାସନ କରି ପାରନ୍ତି, କିନ୍ତୁ ତାହା ସୁବିଧାଜନକ କି ? ସାଧୁଲୋକେ ଚୋର ଡକାଇ ହାତରୁ ରକ୍ଷା ପାଇବା ପାଇଁ ଶାସକ ସମ୍ପ୍ରଦାୟଙ୍କର ନିକଟରେ ବାସ କରନ୍ତି କିନ୍ତୁ "ଚୋର ନିକଟ ଚନ୍ଦ୍ରମା" ଦୁର୍ବୃତ୍ତଲୋକେ ସେଠାରୁ ଦୂରରେ ରହିବାକୁ ସୁଖ ପାନ୍ତି ।

ଲେଖକ ଓଡ଼ିଶା ସଙ୍ଗେ ମହାନଦୀ ପଥରେ ମଧ୍ୟପ୍ରଦେଶର ବାଣିଜ୍ୟ କଥା ଯେ କହୁଅଛନ୍ତି ତାହା ଶୁଣୁମାସିଆ ପୁଣି ଇଦାନୀ ମଧ୍ୟପ୍ରଦେଶ ରେଲଦ୍ୱାରା ବଙ୍ଗଳା ବମ୍ବେ ପ୍ରଭୃତି ସଙ୍ଗେ ଯୋଗ ହେବାରୁ ସେ ବାଣିଜ୍ୟ ବହୁପରିମାଣରେ କମି ଯାଇଅଛି, ତହିଁର ଉନ୍ନତିର ଆଶା ମଧ୍ୟ ନାହିଁ । "ରେଲ ଷ୍ଟିମର ଯୋଗୁଁ ବେପାର ବଣିଜର କୌଣସି ବାଧା ହୋଇ ନ ପାରେ" ବୋଲି ସେ ଯାହା କହି ଅଛନ୍ତି ତାହା ଠିକ୍ ମାତ୍ର ମଧ୍ୟପ୍ରଦେଶରୁ ଓଡ଼ିଶାକୁ କି ମହାନଦୀ ବାଟେ ଷ୍ଟିମର ଆସେ ? ପୁଣି ଲେଖକ କହନ୍ତି କି ଓଡ଼ିଶାର ଅନେକ କୁଲି କଲିକତାରେ ପ୍ରତିପାଳିତ ହେଉ ଅଛନ୍ତି ନାଗପୁରରେ ମଧ୍ୟ ଅଛନ୍ତି । ନାଗପୁରର ଓଡ଼ିଆ କୁଲିଙ୍କର ସଂଖ୍ୟା କଲିକତା ପ୍ରବାସୀ ଓଡ଼ିଆ ଅପେକ୍ଷା କେତେ ବେଶି ତାହା ସେ ଦେଖାଇ ଦେଇଥିଲେ ଭଲ ହୋଇଥାନ୍ତା । ଫଳତଃ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରସାଦରୁ ଓଡ଼ିଆମାନେ ଭାରତବର୍ଷର ପ୍ରାୟ ସକଳ ପ୍ରଦେଶକୁ ଯିବା ଆସିବା କରନ୍ତି, ସୁତରାଂ ଏ ଯୁକ୍ତି ଅନୁସାରେ ମିଶିବ ଓଡ଼ିଶା ପଞ୍ଜାବ କି ନେପାଳ ସଙ୍ଗେ ମିଶିଲେ କେମନ୍ତ ହେବ ?

ଓଡ଼ିଶା ଯେଉଁ ପ୍ରଦେଶ ସଙ୍ଗେ ମିଶୁ ନା କାହିଁକି ସେଥିରେ ଓଡ଼ିଆଙ୍କର ସଂଖ୍ୟା ଆଦୌ ବୃଦ୍ଧି କିମ୍ବା ହ୍ରାସ ହେବ ନାହିଁ ।

୯ମ "Personal administration" ପ୍ରତ୍ୟକ୍ଷଶାସନ-ଏ ସମ୍ବନ୍ଧରେ ଗବର୍ଣ୍ଣମେଣ୍ଟଙ୍କର ଅଭିପ୍ରାୟକୁ ଲେଖକ ଏକାବେଳକେ ଉଡ଼ାଇ ଦେବାକୁ ବସି ଅଛନ୍ତି, ମାତ୍ର ସେ ଯେ ଯୁକ୍ତି ଦେଖାଇ ଅଛନ୍ତି ତାକୁ ଚପିଲେ ତହିଁରେ ସାର କିଛି ନାହିଁ । ସେ କହନ୍ତି "ଓଡ଼ିଶାର ମଧ୍ୟପ୍ରଦେଶ ସଙ୍ଗେ ମିଳନ ପ୍ରସ୍ତାବରେ ଏହି ପ୍ରତ୍ୟକ୍ଷ ଶାସନକୁ "ବିହାର" ବିପକ୍ଷ କାରଣରୂପେ ଦେଖାଇ ପାରନ୍ତି, କିନ୍ତୁ ଗବର୍ଣ୍ଣମେଣ୍ଟ କଥା ଅନୁସାରେ ଦେଖିବାକୁ ଗଲେ ବଙ୍ଗଳାର ବର୍ଦ୍ଧମାନ ଢାକା ମୈମନସିଂହର ଅବସ୍ଥା ଓଡ଼ିଶାର ଅବସ୍ଥା ସମାନ ନୁହେ । କାରଣ ପ୍ରଥମୋକ୍ତ ସ୍ଥାନମାନଙ୍କରେ ଚିରସ୍ଥାୟୀ ବନ୍ଦୋବସ୍ତ, ଏବଂ ଓଡ଼ିଶାରେ ଅସ୍ଥାୟୀ ବନ୍ଦୋବସ୍ତ । ଚିରସ୍ଥାୟୀ ବନ୍ଦୋବସ୍ତ ସ୍ଥାନମାନଙ୍କରେ ପ୍ରତ୍ୟକ୍ଷ ଶାସନ ଯେତେ ଦୂର ଆବଶ୍ୟକ ଅସ୍ଥାୟୀ ବନ୍ଦୋବସ୍ତ ରାଜ୍ୟରେ ସେତେଦୂର ନୁହେ ବୋଲି ନିଜେ ଗବର୍ଣ୍ଣମେଣ୍ଟ ସ୍ୱୀକାର କରିଅଛନ୍ତି । * * * * ସୁତରାଂ ରାଜଧାନୀର ନିକଟବର୍ତ୍ତୀ ହୋଇ ପ୍ରତ୍ୟକ୍ଷ ଶାସନ ପାଇବା ଓଡ଼ିଶାପକ୍ଷେ ବିଶେଷ କିଛି ଆବଶ୍ୟକ ନୁହେ; କିମ୍ବା ସେଥିଯୋଗେ ଶାସନକାର୍ଯ୍ୟର କୌଣସି ବିଶୃଙ୍ଖଳା ହେବ ନାହିଁ" ।

ବର୍ତ୍ତମାନ ଦେଖାଯାଉ ବନ୍ଦୋବସ୍ତ ସମ୍ପର୍କ ହେତୁ ଓଡ଼ିଶାର ଅବସ୍ଥା ବଙ୍ଗଳା ସଙ୍ଗେ ମେଳ କେତେଦୂର ଓ ମଧ୍ୟପ୍ରଦେଶ ସଙ୍ଗେ ବା କିପରି ମେଳ । ବଙ୍ଗଳାର ବନ୍ଦୋବସ୍ତ ଚିରସ୍ଥାୟୀ, ମଧ୍ୟପ୍ରଦେଶର ବନ୍ଦୋବସ୍ତ ଅସ୍ଥାୟୀ ଓ ଦଶସାଲା କିନ୍ତୁ ଓଡ଼ିଶାରେ ଗଡ଼ଜାତ ଓ କିଲ୍ଲାଜାତ ମହାଲମାନ ଚିରସ୍ଥାୟୀ ବନ୍ଦୋବସ୍ତ କେବଳ ମୋଗଲବନ୍ଦର କେତେକାଂଶରେ ମିଆଦି ବନ୍ଦୋବସ୍ତ ପ୍ରଚଳିତ ତାହାର ମିଯାଦ କିନ୍ତୁ ୩୦ ବର୍ଷ । ଏପରସ୍ଥଳେ ଓଡ଼ିଶାର ଅବସ୍ଥା କେଉଁ ପ୍ରଦେଶ ସଙ୍ଗେ ଅଧିକ ମିଶୁଅଛି ତାହା ପାଠକେ ବିଚାର କରି ଦେଖିବେ ।

ମୁଣି ବନ୍ଦୋବସ୍ତ ସ୍ଥାୟୀ ହେଉ ବା ଅସ୍ଥାୟୀ ହେଉ ବଙ୍ଗଳା ଏବଂ ଓଡ଼ିଶାରେ ପ୍ରଜାସ୍ୱତ୍ୱ ଆଇନ ପ୍ରଚଳିତ ଥିବାରୁ ପ୍ରଜାଙ୍କ ଦେୟ ଖଜଣା ସମ୍ବନ୍ଧରେ ଉଭୟ ପ୍ରଦେଶରେ ଏକ ନିୟମ ପ୍ରଚଳିତ ଅଛି । ଏ ଖଜଣାକୁ ଅନର୍ଥକ ବୃଦ୍ଧି କରିବାର ଉକ୍ତ ଆଇନମାନେ ସହଜ ନୁହେଁ ! ଓଡ଼ିଶାର ଗତ ବନ୍ଦୋବସ୍ତରେ ପ୍ରଜା ଉପରେ ଯେ (Fair Rent) ନ୍ୟାଯ୍ୟ ଖଜଣା ଧାର୍ଯ୍ୟ ହୋଇ ଅଛି ତାହା ସେ ଯେଉଁ ଖଜଣା ଦେଉଥିଲେ ତହିଁରୁ ଏକପଇସା ବୃଦ୍ଧି ହୋଇ ନାହିଁ । ବରଂ ମଧ୍ୟପ୍ରଦେଶର କଥା ସବୁ ଯାଉଅଛି, ଏବେ ଭୂମି ଅନୁର୍ବର ତହିଁରେ ଖଜଣାର ଦର ବଡ଼ କଡ଼ା ଏପରି ପ୍ରଦେଶ ସଙ୍ଗେ ମିଶିଲେ ସଂସର୍ଗ ଦୋଷରେ ଆମ୍ଭମାନଙ୍କୁ ଯେବେ ସେହି ଉନ୍ନପ୍ରାନ୍ତରେ ବର୍ଦ୍ଧିତ ଦରରେ ଖଜଣା ଦେବାକୁ ପଡ଼େ ତେବେ ସର୍ବନାଶ ! ! ! ଯେଉଁ ଗରିବ ପ୍ରଜାମାନେ ଖଜଣା ଦିଅନ୍ତି ଲେଖକ ସେମାନଙ୍କୁ ଏ କଥାମାନ ବୁଝାଇ ଦେଇ ସେମାନଙ୍କର ମତ ନେଇ ଦେଖନ୍ତୁତ ସେମାନେ କଅଣ କହନ୍ତି ? ବ୍ରିଟିସ ଶାସନାଧୀନରେ ଅମ୍ଭେମାନେ ମହା ଶାନ୍ତି ସୁଖରେ ଅଛୁଁ, ଏପରି ଶାସନପ୍ରଣାଳୀର କେନ୍ଦ୍ରର ଯେତେ ନିକଟରେ ରହିପାରୁଁ ତେତେ ଭଲ, ଏପରି ସ୍ଥଳେ ପ୍ରତ୍ୟକ୍ଷ ଶାସନରୁ ଦୂରରେ ରହିବାକୁ ବାଞ୍ଛା କରିବା ବାତୁଳତା ଭିନ୍ନ କ ବୋଲାଯାଇ ପାରେ ?

ଦଶମକଥା. ହାଇକୋର୍ଟ—ହାଇକୋର୍ଟ ବ୍ରିଟିଶ ଶାସନପ୍ରଣାଳୀର ପ୍ରଧାନ ଗୌରବ ଓ ଭାରତବାସିମାନଙ୍କର ଧନ, ପ୍ରାଣ ଓ ମାନ ରକ୍ଷାର ପ୍ରଧାନ ଭରସା । ଲେଖକ ଏ କଥାକୁ ଅସ୍ୱୀକାର କରି ପାରି ନାହାନ୍ତି । ତଥାପି ଆପଣାର ଫୁସୁଲାଇବା ପ୍ରକୃତିର ଅନୁରୋଧରେ ଲୋକଙ୍କୁ ତାଙ୍କ ମରୀଚିକା ଦେଖାଇ କହୁଅଛନ୍ତି ଯେ ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ମଧ୍ୟ ସମୟରେ ଅମ୍ଭେମାନେ ସ୍ୱତନ୍ତ୍ର ହାଇକୋର୍ଟ ପାଇ ପାରିବୁଁ । ଭାଇ ଲେଖକ ! ତୁମ୍ଭର ଫୁସୁଲାଫୁସୁଲି କଥା ବେଶ ଚିହ୍ନିହେଲା, ତୁମ୍ଭର ମିଥ୍ୟା ପ୍ରରୋଚନାରେ ଅମ୍ଭମାନଙ୍କର ଯାହା ଅଛି

ତାଙ୍କୁ କାହିଁକି ଛାଡ଼ିବୁଁ ? ତୁମ୍ଭ କଥାରେ ଭୁଲିଲେ ପଛକୁ ଯାଇଁ ହେଉ, ବର୍ତ୍ତମାନର ହାଇକୋର୍ଟର ସୁବିଧାର ହରାଇ ବେଆଇନୀ (non-regulation) ପ୍ରଦେଶକେ ମିଶିବାକୁ ହେବ ? ଆଉ ତୁମ୍ଭେ ଯେ କହୁଛ ଓଡ଼ିଶା ମଧ୍ୟପ୍ରଦେଶ ସଙ୍ଗେ ମିଶିଲେ ମଧ୍ୟ ଆସାମ ପରି ହାଇକୋର୍ଟରୁ ବଞ୍ଚିତ ହେବ ନାହିଁ ତୁମ୍ଭେ କି ମନେ କର ଯେ ଲୋକେ ଏତେ ନିର୍ବୋଧ ଯେ ତୁମ୍ଭର ଏ ଚାତୁରୀ ବୁଝି ପାରିବେ ନାହିଁ ? ଭଲ ଦେଖନ୍ତ ଆସାମ, ବଙ୍ଗଳା, ଗଞ୍ଜାମ, ବେହାର ଓଡ଼ିଶା ସହିତ ମଧ୍ୟପ୍ରଦେଶ ଏକମାତ୍ର ହାଇକୋର୍ଟର ଅଧୀନରେ ରହିଲେ ତହିଁର ଇଲାକା କେତେ ବଡ଼ ହୋଇଯିବ ? ଯେ ସ୍ଥଳେ ବଙ୍ଗଳାହତା ଅତି ବଡ଼ ହୋଇ ପଡ଼ିବାରୁ ବର୍ତ୍ତମାନ ଖାରଜଦାଖଲର ପ୍ରସ୍ତାବ ଚଳୁଅଛି ସେସ୍ଥଳେ ହାଇକୋର୍ଟର ଇଲାକାକୁ ତହୁଁ ବଳ ବୃଦ୍ଧି କରିବା ପକ୍ଷେ କେଉଁ ବୁଦ୍ଧିମାନ ଆଶା କରିପାରେ ? ଆଉ ମଧ୍ୟ-ପ୍ରଦେଶ ପାଇଁ କି ଗୋଟିଏ ସ୍ୱତନ୍ତ୍ର ହାଇକୋର୍ଟ ସ୍ଥାପିତ ହେବା ପରି ବଡ଼ ସହଜ କଥା ? ତୁମ୍ଭର ପିଲାପରି ଅନର୍ଥକ ଅଳରେ ଗବର୍ଣ୍ଣମେଣ୍ଟ ଏ ବହୁବ୍ୟୟ ଭାର ବହନ କରିବାକୁ ଯେ ରାଜି ହେବେ ଗବର୍ଣ୍ଣମେଣ୍ଟ ତେତେ ନିର୍ବୋଧ ନୁହନ୍ତି । ସୁତରାଂ ତୁମ୍ଭେ ଯାହା ଫୋଲଅଣା ମୁଖର ଆଶା ଦେଇ ଆପଣାର ସ୍ୱାର୍ଥସାଧନ ଅଭିସନ୍ଧିରେ ଲୋକଙ୍କୁ ଫୁସୁଲାଉଅଛ ସେ ଆଶା ଆକାଶ କୁସୁମପ୍ରାୟ ଅଳୀକ ।

ପାଠକେ ! ପ୍ରାର୍ଥନା ପୁସ୍ତିକାରେ ଯେଉଁ ଯୁକ୍ତିମାନ ପ୍ରଦର୍ଶିତ ହୋଇଅଛି ତହିଁର ସଂକ୍ଷେପ ସମାଲୋଚନା ଉପରେ ଦିଆଗଲା, ତହିଁରୁ ଆପଣମାନେ ଦେଖି ପାରିବେ ଯେ ସେ ପୁସ୍ତିକାରେ ସାର କିଛି ନାହିଁ, କେବଳ ତହିଁର ଲେଖକ ସମ୍ଭବତଃ ଆପଣାର ସ୍ୱାର୍ଥ ସାଧନ ରୂପ ଦୁରଭିସନ୍ଧିର ବଶବର୍ତ୍ତୀ ହୋଇ ଲୋକଙ୍କୁ ଫୁସୁଲାଇବାପାଇଁ ସେ ପୁସ୍ତିକା ଝଣ୍ଟିକ ଗୋପନରେ ବିତରଣ କରୁଅଛନ୍ତି । କହୁବା ଉତ୍କଳୀୟ ବଙ୍ଗ ବା ଜନସାଧାରଣଙ୍କର ସେପରି ମତ କଦାପି

ହିବେ । ଅତଏବ ଆପଣମାନେ ସେ ପ୍ରରୋଚନା ବାକ୍ୟରେ କଦାପି କର୍ଣ୍ଣପାତ କରିବେ ନାହିଁ । କଟକସ୍ଥ ଉତ୍କଳସଭାରୁ ଗତ ସେତମ୍ବର ମାସରେ ମହାମାନ୍ୟ ଭାରତ ଗବର୍ଣ୍ଣମେଣ୍ଟଙ୍କ ଶ୍ରୀସମୂକୁ ଯେ ଆବେଦନ ପତ୍ର ପଠା ଯାଇଥିଲା ତାହା ଉତ୍କଳୀୟ ମାନ୍ୟଗଣ୍ୟ ବୁଦ୍ଧିମନ୍ତ ଲୋକଙ୍କଦ୍ୱାରା ଲେଖା ଯାଇଥିଲା, ତହିଁରେ ଓଡ଼ିଶା ମଧ୍ୟପ୍ରଦେଶ ସଙ୍ଗେ ମିଶିବା ବିରୁଦ୍ଧରେ ଘୋର ପ୍ରତିବାଦ ହୋଇଥିଲା, ପାଠକମାନେ ସେ ଆବେଦନ ପତ୍ରପାଠ କଲେ "ପ୍ରାର୍ଥନା" ପୁସ୍ତିକା ଲିଖିତ କଥା-ମାନଙ୍କର ଅସାରତା ଉତ୍ତମରୂପେ ହୃଦୟଙ୍ଗମ କରି ପାରିବେ । ଇତି-ଅଲମତି ବିସ୍ତରେଣ ।

